# ବେଳେ ବେଳେ
# କବିତା




୨

ବୀରେନ୍ଦ୍ର ନାୟକ

# ବେଳେ ବେଳେ କବିତା

ବୀରେନ୍ଦ୍ର ନାୟକ

ପ୍ରକାଶିକା :

**ଶ୍ରୀମତୀ ସରଳା ନାୟକ**
ଏନ୍-୬/୨୯୯, ଜୟଦେବ ବିହାର
ଭୁବନେଶ୍ୱର-୭୫୧ ୦୧୫

ପ୍ରଥମ ସଂସ୍କରଣ :

୨୦୦୩

ମୁଦ୍ରଣ :

**ଶୋଭନ**
୧୦୬ ଆଚାର୍ଯ୍ୟ ବିହାର
ଭୁବନେଶ୍ୱର-୭୫୧ ୦୧୩

ମୂଲ୍ୟ :

ଟ.୫୦.୦୦

ଓଡ଼ିଶାରେ ମହାବାତ୍ୟା,
ଗୁଜରାଟରେ ଭୂମିକମ୍ପ ଓ ଦଙ୍ଗା -
ଯେଉଁ ନିରୀହ ଓ ନିର୍ଦ୍ଦୋଷ ଜୀବନ ଗୁଡ଼ିକୁ
ଅଚାନକ ନିର୍ବାପିତ କରିଦେଲା-
ସେହିମାନଙ୍କ ସ୍ମୃତିରେ

# କିଛି କହିବାକୁ ପଡ଼େ ବୋଲି

ସବୁବେଳେ କବିତା ଲେଖି ପାରୁଥିବା ବ୍ୟକ୍ତି ନିଶ୍ଚିତ ଏକ ଅନନ୍ୟ ପ୍ରତିଭାର ଅଧିକାରୀ । କିନ୍ତୁ ବେଳେ ବେଳେ କବିତା ଲେଖିବା ସଭିଙ୍କ ଦ୍ୱାରା ସମ୍ଭବ ହୋଇପାରେ ବୋଲି ମୋର ଧାରଣା । ବାସ୍ତବ ପରିସ୍ଥିତିର ମୁହାଁମୁହିଁ ହେଲେ ଯେଉଁ ଉଚ୍ଛାସ ମନକୁ ଆନ୍ଦୋଳିତ କରେ, ତାହାକୁ ନିଜ ଭିତରୁ ବାହାର କରିବା ପାଇଁ ଲେଖି ବସିଲେ - କବିତା ସୃଷ୍ଟି ହୁଏ ।

ତେଣୁ କବିତା ଲେଖିବା ପାଇଁ ମୁଁ କବିତା ଲେଖିନାହିଁ ।

କେତେକ ପରିସ୍ଥିତିରେ କବିତା ମାଡ଼ିଛି - ସେତେବେଳେ ଯାଇ ମୁଁ କବିତା ଲେଖିଛି । ମୋ ଡାଏରୀ ଖାତା ଦେଖିଲେ ମୁଁ ଜାଣୁଛି ଯେ ପ୍ରାୟଃ ତିନି ଦଶନ୍ଧି ଧରି ଭିନ୍ନ ଭିନ୍ନ ସମୟରେ ମୁଁ କବିତା ଲେଖିଛି । ଯଦିଓ ସମୁଦାୟ କବିତାର ସଂଖ୍ୟା ପଚାଶରୁ ଅଧିକ ହେବ ନାହିଁ । ଏହି କବିତା ଗୁଡ଼ିକରୁ ଅଧିକାଂଶ ଅପ୍ରକାଶିତ, ଡାଏରୀର ପୃଷ୍ଠାରେ ସୀମିତ । ଅଳ୍ପ କେତୋଟି କବିତା ଯାହା ପ୍ରକାଶିତ ହୋଇଛି ତାହା କେତେକ ବନ୍ଧୁଙ୍କର ବାଧବାଧକତାରେ ଓ ସହଯୋଗରେ । ଯେପରି ଏହି ସଙ୍କଳନରେ ସ୍ଥାନିତ କବିତା 'ଅଭିଷେକ' ବନ୍ଧୁ ରବିଶଙ୍କର ମିଶ୍ରଙ୍କୁ (ପ୍ରଫେସର, ଇଂରାଜୀ ବିଭାଗ, ସମ୍ବଲପୁର ବିଶ୍ୱବିଦ୍ୟାଳୟ) ଭଲ ଲାଗିଥିଲା ଓ ଏହାକୁ ପ୍ରକାଶ କରିବା ପାଇଁ ସେ ଦେଇଥିଲେ ତାଗିଦ୍ । କବି ବନ୍ଧୁ ଗିରିଜା ବଳିୟାରସିଂହ ସେତେବେଳେ ଥିଲେ 'ସମ୍ବାଦ' ଖବରକାଗଜର ସାହିତ୍ୟ ପୃଷ୍ଠା ଦାୟିତ୍ୱରେ । ତାଙ୍କର ସହଯୋଗରେ ଏହି କବିତାଟି ପ୍ରକାଶିତ ହୋଇଥିଲା 'ସମ୍ବାଦ' ରେ ।

ମୋର ସମସ୍ତ ପ୍ରକାଶିତ କବିତା ପଛରେ ଗିରିଜା ବଳିୟାରସିଂହଙ୍କର ଏକ ଅନସ୍ୱୀକାର୍ଯ୍ୟ ଭୂମିକା ରହିଛି । ତାଙ୍କର ସହଯୋଗ ନ ଥିଲେ ବୋଧହୁଏ ଏହି ସଙ୍କଳନର ପ୍ରକାଶନ ସହିତ ମୋର କବିତା ଗୁଡ଼ିକ ପ୍ରଥମଥର ପାଇଁ ପ୍ରକାଶିତ ହୋଇଥାନ୍ତା ।

ଏହି ଭଳି ସଙ୍କଳନଟିଏ କରିବା ପାଇଁ ବହୁ ଦିନରୁ ମୋତେ କହି ଆସୁଥିଲେ ମୋର ପତ୍ନୀ ସରଳା ।

ମୋର ଦୀର୍ଘସୂତ୍ରୀ ଚରିତ୍ର ତାଙ୍କର ଏହି ଆଗ୍ରହ ପାଇଁ ଥିଲା କିନ୍ତୁ ଅନତିକ୍ରମଣୀୟ । ''ତୁମ ଦେଇ ହେବ ନାହିଁ'' କହି ସେ ଯେତେବେଳେ ବୋଧେ ଏପରି ସଙ୍କଳନଟିଏ ପ୍ରକାଶ ପାଇବାର ଆଶା ହରାଇବାକୁ ବସିଥିଲେ, ସେତେବେଳେ ବନ୍ଧୁ ଚନ୍ଦ୍ର କିଶୋର ମହାପାତ୍ର (ପ୍ରାଧ୍ୟାପକ, ଗଣିତ ବିଭାଗ, ସମ୍ବଲପୁର ବିଶ୍ୱବିଦ୍ୟାଳୟ) ମୋ ପଛରେ ପଡ଼ିଗଲେ । ''ସଙ୍କଳନ ନିଶ୍ଚୟ ବାହାରିବ'' - ଏହା ଥିଲା ଚନ୍ଦ୍ରବାବୁଙ୍କର ତାଗିଦ୍; ପାଣ୍ଡୁଲିପିକୁ ନେଇ ପ୍ରଥମ ଡି.ଟି.ପି. କରାଇଦେଲେ ନିଜ ତତ୍ତ୍ୱାବଧାନରେ । ଚନ୍ଦ୍ରବାବୁଙ୍କର ଉଦ୍ୟମ ସହିତ ମିଶିଗଲା ସମ୍ମାନାସ୍ପଦ ସ୍ୱାଧୀନାନନ୍ଦ ପଟ୍ଟନାୟକ (ପ୍ରଫେସର, ଗଣିତ ବିଭାଗ, ସମ୍ବଲପୁର ବିଶ୍ୱବିଦ୍ୟାଳୟ) ଓ ଶିଳ୍ପୀ ବନ୍ଧୁ କୁଞ୍ଜବିହାରୀ ଉପାଧ୍ୟାୟଙ୍କର ଏହି ଭଳି ସଙ୍କଳନକୁ ପ୍ରକାଶିତ ଦେଖିବା ପାଇଁ ପ୍ରକଟିତ ଆଗ୍ରହର ପୁନଃପୌନିକତା । କବିତା ଗୁଡ଼ିକ ଭଲ ଲାଗୁଛି ବୋଲି କହି ଏ ଦିଗରେ ମୋତେ ଉତ୍ସାହିତ କରୁଥାନ୍ତି ସମ୍ମାନାସ୍ପଦ ଗୋକୁଳାନନ୍ଦ ଦାସ (ପୂର୍ବତନ କୁଳପତି, ଉତ୍କଳ ବିଶ୍ୱବିଦ୍ୟାଳୟ) ଓ ତାଙ୍କ ପତ୍ନୀ ଶ୍ରୀମତୀ ନିନା ଦାସ, ଅଗ୍ରଜ ପ୍ରତିମ ସୁପ୍ରିୟ ଘୋଷମଲ୍ଲିକ (ପ୍ରଫେସର, ନୃତତ୍ତ୍ୱ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ) ଓ ବନ୍ଧୁ କିଶୋର କୁମାର-ବଶା (ପ୍ରଫେସର, ନୃତତ୍ତ୍ୱ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ) ।

ଏହାଛଡ଼ା କାଁ ଭାଁ କେତେବେଳେ ଯଦି ଆସରରେ ଯୋଗ ଦେଇ କବିତା ଆବୃତ୍ତି କରିଛି, ଶ୍ରୋତାଙ୍କ ତାରିଫ ଶୁଣିଛି ।

ତଥାପି ସାହସ ପାଉ ନଥିଲା - ସଙ୍କଳନଟିଏ କରିବା ପାଇଁ ।

ପାଣ୍ଡୁଲିପିକୁ ଦେଖାଇଲି ସମ୍ମାନାସ୍ପଦ ଗଗନେନ୍ଦ୍ର ନାଥ ଦାଶ (ପ୍ରଫେସର, ଭାଷାବିଜ୍ଞାନ ବିଭାଗ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ), ଅଗ୍ରଜ ପ୍ରତିମ ରବୀନ୍ଦ୍ରନାଥ ସାହୁ ଓ 'ନିଶାନ୍ତ'ର ସମ୍ପାଦକ ବନ୍ଧୁ ସଂଗ୍ରାମ ଜେନାଙ୍କୁ । ସେମାନଙ୍କର ପରାମର୍ଶ ଗୁଡ଼ିକ ଥିଲା ମୂଲ୍ୟବାନ । ସଙ୍କଳନଟି ପ୍ରକାଶ ପାଇବା ଉଚିତ୍ ବୋଲି ସେମାନେ ମତ ଦେଲେ । ମୋର ଇତଃସ୍ତତଃମନ ସ୍ଥିର ହେଲା ।

କିନ୍ତୁ ପ୍ରକାଶକ ହେବ କିଏ ?

କବିତା ବହି ପ୍ରକାଶ କରିବା ପାଇଁ ପେଶାଦାର ପ୍ରକାଶକ ମାନଙ୍କୁ ରାଜି କରାଇବାକୁ ହୁଏ । ରାଜି କରାଇବା ପାଇଁ କ୍ଷମତା ଥିବା ଦରକାର ।

ଯେଉଁମାନଙ୍କର ଏପରି କ୍ଷମତା ଥାଏ, ସେମାନଙ୍କଠାରେ ସାମାନ୍ୟତମ ପ୍ରତିଭା ଦୃଶ୍ୟମାନ ହେଲେ ବା ସୃଜନଶୀଳ ହେବାର ଦୁର୍ବଳତା ଦୃଶ୍ୟମାନ ହେଲେ ପ୍ରକାଶକ ମାନେ ତାଙ୍କର 'ସୃଷ୍ଟି'କୁ ପ୍ରକାଶ କରିବାର 'ଗୌରବ'ରୁ ନିଜକୁ ବଞ୍ଚିତ କରିବା ଲାଭଜନକ ମଣନ୍ତି ନାହିଁ ।

ଯେଉଁମାନେ ଏପରି କ୍ଷମତାରୁ ବଞ୍ଚିତ ଅଥଚ ପ୍ରତିଷ୍ଠିତ ପେଶାଦାର ପ୍ରକାଶକଙ୍କର ମୋହର ପ୍ରତି ରହିଛି ଆସକ୍ତି ସେମାନେ ଯେ ପ୍ରକାଶକଙ୍କର ଦାବି ଅନୁସାରେ କାଗଜ, ମୁଦ୍ରଣ ଖର୍ଚ୍ଚ ଇତ୍ୟାଦି ଦେଇ ପୁସ୍ତକର ପ୍ରକାଶନ କରନ୍ତି - ଏହା ଏବେ ଜଣାଶୁଣା କଥା । ଯିଏ ପ୍ରକାଶିତ ହୁଏ ସେ ଜାଣେ, ଯିଏ ପ୍ରକାଶକ ହୁଏ ସେ ଜାଣେ ଓ ଯେଉଁମାନେ ଏହି ପ୍ରକ୍ରିୟାରେ ଅଛନ୍ତି ସେମାନେ ମଧ୍ୟ ଜାଣନ୍ତି । ତଥାପି ପ୍ରବଞ୍ଚନାଟିଏ ସୃଷ୍ଟି କରାହୁଏ ସମସ୍ତଙ୍କର ସହମତିରେ ।

ଅବଶ୍ୟ ବହି ବଜାରରେ ଓଡ଼ିଆ ବହିର ମାନ୍ଦା ଚାହିଦା ଦେଖିଲେ, ଏହା ସ୍ୱାଭାବିକ ଯେ କାହିଁକି ଅବା କେଉଁ ପ୍ରକାଶକ ତାର ପୁଞ୍ଜି ନିବେଶ କରିବ; ବିଶେଷତଃ ଯେତେବେଳେ କବି ବା ଲେଖକ ଭାବେ ପାଦ ରଖୁଥିବା ମଣିଷଟି ସମ୍ପୂର୍ଣ୍ଣ ନୂତନ ।

ପ୍ରକାଶକ ଦୁନିଆର ହିସାବ ନିକାସର ପରିଧି ବାହାରେ ରହିବା ଶ୍ରେୟସ୍କର ବୋଲି ମନେ କରିଛି । ତେଣୁ ଏହି ସଙ୍କଳନଟିର ପ୍ରକାଶିକା ମୋର ପତ୍ନୀ ।

ଉଦ୍ୟମ କରି କବିତା ଲେଖି ନାହିଁ । ପରୀକ୍ଷା ନିରୀକ୍ଷା ସଚେତନ ଭାବରେ କରିନାହିଁ । ତେଣୁ ଆଶା କରୁଛି ପାଠକର ମନକୁ ଛୁଇଁବ । ତାର ଚାରିପାଖ ଦୁନିଆ ପ୍ରତି ସଚେତନ ପାଠକକୁ ବୋଧେ ଅଧିକ ଛୁଇଁବ । କବିତାର ଧାଡ଼ି ଗୁଡ଼ିକରେ ବହୁ ଚିହ୍ନା ମୁହଁ, ଜଣାଶୁଣା ଘଟଣାଗୁଡ଼ିକ ପ୍ରତ୍ୟକ୍ଷ ହୋଇଯିବ ।

ଏହା ଯଦି ହୁଏ, ତାହାହେଲେ ଏହି କବିତା ଗୁଡ଼ିକ ସାର୍ଥକ ବୋଲି ମନେ କରିବି । ସଙ୍କଳନ ଏକ ନିଷ୍ଫଳ ଉଦ୍ୟମ ନୁହେଁ ବୋଲି ମନେ କରିବି ।

କିନ୍ତୁ ସଙ୍କଳନର ଲକ୍ଷ୍ୟ ସଫଳ ହେଲା ବୋଲି ଭାବିବି ଯଦି ଏହା ପାଠକର ମନରେ କବି ହେବାର ଦୁର୍ବଳତା ସୃଷ୍ଟି କରେ ।

ବୀରେନ୍ଦ୍ର ନାୟକ

# ସୂଚୀପତ୍ର

# ସ୍ୱାଧୀନତା
# ଓ
# କୋକାକୋଲା

ଯେଉଁଦିନ ସ୍ୱାଧୀନତାକୁ
ପଚାଶ ପଶିଲା,
ମୋ ଅଜାକୁ
ମୁଁ ଆଣି
ଦେଲି କୋକାକୋଲା ।

ସେ କହିଲା-
ଏ' ବୋତଲରେ
କ'ଣ ତୁ ଦେଲୁ;
ଏ'ବୟସରେ କ'ଣ ମୋତେ ମଦ ପିଆଇବୁ ?

ମୁଁ କହିଲି-
ଅଜା ମୋର
କେବେ ତୁ ବୁଝିବୁ;
ଆଜିକାଲି ଗ୍ଲାସ ନୁହେଁ
ବୋତଲରେ ମଣିଷ ପାଣି ପିଇଲାଣି,
ସବୁ ସଭା ଆଲୋଚନା ଟେବୁଲ ଉପରେ
ପାଣି ଭରା ବୋତଲ
ବଞ୍ଚାଉଛି ଠିଆ ହେବା
ନିୟମିତ ଦୃଶ୍ୟ ତ ହେଲାଣି-
ତୁ ବା କେମିତି ଦେଖିବୁ;

ତୋ ଆଖିର ଦୃଷ୍ଟି ଶକ୍ତି
ବହୁଦିନୁ କ୍ଷୀଣ ଯେ ହେଲାଣି ।

ଅଜା ମୋର ରାଗିଗଲା ।
କହିଲା-
ଆବେ ବନ୍ଦ କର ତୋ ଭାଷଣ
କହ କ'ଣ ଆଣିଚୁ ତୁ
ଏହି ବୋତଲରେ ?

ମୁଁ କହିଲି-
ତୁ ପରା ଲଢ଼ିଥିଲୁ
ଗାନ୍ଧୀର ସୈନ୍ୟ ହୋଇ,
ବିଦେଶୀକୁ ଦେଲୁ ତୁ ହଟାଇ,
ଦେଶଟାକୁ କରିଲୁ ସ୍ୱାଧୀନ
ଗାନ୍ଧୀବାଣୀ କରି ଗଣ୍ଠି ଧନ ।

ସେ କହିଲା-
ସେଠୁ କ'ଣ ହେଲା
ତୋତେ ଥଟା ଲାଗିଛି କି ଶଳା ?

ମୁଁ କହିଲି-
ତୋ ଆଖିରୁ ଦୃଷ୍ଟି ତ ଯାଇଛି,
ତୋ ସ୍ମରଣ ଶକ୍ତିକୁ ବୋଧେ ଘୁଣ ଲାଗିଅଛି ।
ତୁ କ'ଣ ଜାଣିପାରୁ ନାହୁଁ-
ସ୍ୱାଧୀନ ଭାରତକୁ ଆଜି ପରା
ପଚାଶ ପଶିଲା ।

ତା ଆଖିରୁ ଦୁଇ ଠୋପା ଲୁହ ଗଡ଼ିଗଲା ।

ସେ କହିଲା-
ହେଉ ହେଲା ।
କିନ୍ତୁ, ତା ସାଙ୍ଗରେ
ଏ' ବୋତଲର ସମ୍ପର୍କ
କେଉଁଠୁ ଆସିଲା ?

ମୁଁ କହିଲି-
ଏ'ବୋତଲ ସେଇଠି ଫିଟିବ,
ସ୍ୱାଧୀନତା ପଶୁପଶୁ ଯେଉଁଠି
ନେହେରୁ ଦେଲା ଉଦ୍‌ବୋଧନ
ତୁମେ ସବୁ ଦେଖୁଥିଲ
ସୁନାର ସପନ
ଖୁସିରେ ନାଚୁଥିଲା
ଯେବେ ତୁମ ମନ-
ସେଇଠି ଫିଟିବ ଏ'ବୋତଲ
ଗାୟିକା ଗାଇବେ ଏ' ମେରେ ୱତନ:
ଦେଶ ପ୍ରେମ ସଭିଙ୍କୁ ମାତାଲ କରିବ;
ସେଇଠି ଏ'କୋକାକୋଲା
ବୋତଲ ଫିଟିବ !
ଟିକିଟା ଧରିଥିବା
ତୁମ ସଂଗ୍ରାମୀଙ୍କ ଜିଭ
ନୂତନ ସ୍ୱଆଦ ପାଇବ,
ସ୍ୱାଧୀନତାର ତାରୁଣ୍ୟ ଫେରିବ ।

ମୋ ଅଜା କହିଲା-
ତୁମେ ଶଳା
ଏ ଯୁଗର ଟୋକା

କଥା କହି କହି ଶିଖିଥିଲ
କରିବାକୁ ସମସ୍ତଙ୍କୁ ବୋକା ।
ମୁଁ ତୋତେ ପଚାରୁଛି କ'ଣ
ତୁ ଉତ୍ତର ଦେଉଥିବୁ କ'ଣ ।
ତୁ ମୋତେ କହ
ଏ' କୋକାକୋଲା କ'ଣ ?

ମୁଁ କହିଲି-
ସ୍ୱାଧୀନତାର ନୂଆ ନାଁ ଅଟେ କୋକାକୋଲା ।
କୋକାକୋଲା ହାତରେ ଧରିଲେ
ସ୍ୱାଧୀନତାର ସ୍ପର୍ଶ ମିଳେ ।
ତା ଭିତର ପାଣିକୁ ପିଇଲେ
ସ୍ୱାଧୀନତାର ସ୍ୱାଦୁ ମିଳେ ।
ତାକୁ ନେଇ ତର୍ପଣ କରିଲେ
ସ୍ୱାଧୀନତାର ପରମାୟୁ ବଢ଼େ ।

ମୋ ଅଜା ମୁହଁରେ
ଉତ୍ତେଜନା ଉକୁଟି ଉଠିଲା ।
ଚୁପକର, ଚୁପକର ବୋଲି
ସେ ଚିତ୍କାର ଛାଡ଼ିଲା ।
ମୋତେ ବହୁତ ବକିଲା,
କହିଲା ଉତ୍ତର ଦେଉଛୁ ନା
ଗାଉଥିବୁ ପାଲା ।
କହିଲା କ'ଣ ନା
ସ୍ୱାଧୀନତାର ନୂଆ ନାଁ ଅଟେ କୋକାକୋଲା ।

ମୁଁ କହିଲି-
ତୁ ଟି.ଭି. ଦେଖୁନୁ ?
ତୁ ବା ଦେଖୁବୁ କିପରି,
ତୋର ଏତେ ଦୃଷ୍ଟି ଶକ୍ତି କାହିଁ ?
ଦେଖିଲେ ଜାଣନ୍ତୁ
ଆମେ କେତେ ସ୍ୱାଧୀନ ହୋଇଛୁ ।

ଆମ ଟୋକା ଟୋକି
ଛାତିରେ, ଅଣ୍ଟାରେ ଖାଲି କନା ବାନ୍ଧି ଦେଇ
ନାଆଟାରେ ବସି
ଥାଳିଆ ବାଡେଇ ବାଡେଇ
ବାଧାବିଘ୍ନ ହୀନ ହୋଇ
କେମିତି ଭାସି ଯାଉଛନ୍ତି;
ହାତରେ କୋକାକୋଲା ବୋତଲ କୁ ଧରି
ଗୀତ ଗାଇ ଗାଇ କିପରି
ଉଦ୍ଦାମ ନାଚୁଛନ୍ତି ।
ସ୍ୱାଧୀନତା ନ ପାଇଲେ କ'ଣ ଏମିତି ହୁଅନ୍ତେ
କୋକାକୋଲା ହାତରେ ନ ଥିଲେ କ'ଣ
ଏତେ ସ୍ୱାଧୀନ ଦିଶନ୍ତେ ?

ତୁମ ଭଳି କେତେ ଜଣ 'ପୂର୍ବତନ' ଦେଶଭକ୍ତ
ରୋମନ୍ଥନ କରି ତୁମ ସମୟ, ସପନ
ଦୁଃଖ କରି କୁହ ଯେବେ-
ଏ' ଭାରତର କ'ଣ ହେଲା !
ଗାନ୍ଧୀ କ'ଣ ଭାରତକୁ ଏଥିପାଇଁ
ସ୍ୱାଧୀନ କରିଲା ?
ସେବା, ବ୍ରତ ନୁହେଁ ବୃତ୍ତି ହୋଇଗଲା ।

ଆଉ ଛାଡ଼ ଦୀର୍ଘଶ୍ୱାସ
ସ୍ୱାଧୀନତା ଉପରେ ତୁମେ ଯେବେ
ହରାଅ ବିଶ୍ୱାସ,
ସେତେବେଳେ ବାହାରିଛି
କୋକାକୋଲା -
ହେଉ ପଛେ ବିଦେଶୀ କମ୍ପାନୀ
ଯାହାର ପୂର୍ବଜକୁ ତଡ଼ି
ପିଟିଥିଲ ଛାତି,
ଭାରତକୁ ସ୍ୱାଧୀନ କରିଛ ବୋଲି-
ସେହି କୋକାକୋଲା ବାହାରିଛି
ଆମ ସ୍ୱାଧୀନତା ଉତ୍ସବର ପୃଷ୍ଠପୋଷକ ସାଜିଛି ।
ସହରେ ସହରେ ତମ୍ବୁଟାଣି
ଆମ ଗୌରବମୟ ଇତିହାସ ସହ
ଯୁବକ ଯୁବତୀଙ୍କୁ ନିବିଡ଼ କରୁଛି ।

ମୋ ଅଜାର ଭ୍ରୂକୁଞ୍ଚିତ ହେଲା;
ତା' ଓଠ ଥରିବାକୁ ଆରମ୍ଭ କରିଲା ।
କହିଲା, କ'ଣ କହିଲୁ
ବିଦେଶୀ କମ୍ପାନୀ ଅଟେ
ଏହି କୋକାକୋଲା !
ସେ ପୁଣି ସ୍ୱାଧୀନତା ଉତ୍ସବର
ପୃଷ୍ଠପୋଷକ ସାଜିଲା !

ମୁଁ କହିଲି, ଅଜା !
ଏବେଠାରୁ ଏଇୟା ହିଁ ହେବ -
ଏ' ଆଜାଦୀ ଝୁଟା ହୈ
ବୋଲି ସାମ୍ୟବାଦୀ କୁହାଟ ଶୁଭିବ;

ଆଜାଦୀ ବଞ୍ଚାଓ ବୋଲି
ଗାନ୍ଧୀବାଦୀ ଆହ୍ୱାନ ବି ଦେବ ।
ତା ଭିତରେ ସ୍ୱାଧୀନତା ଉତ୍ସବର
ପୃଷ୍ଠପୋଷକ ହେବାକୁ
ଏ' ଭୂଇଁରେ ବିଦେଶୀ କମ୍ପାନୀଙ୍କ
ଭିଡ଼ ବି ଜମିବ,
ଦାଣ୍ଡି ଯାତ୍ରା ବାର୍ଷିକ ଉତ୍ସବ ଏବେ
ଲିଭର କମ୍ପାନୀର ଅନ୍ନପୂର୍ଣ୍ଣା ଲୁଣ ହିଁ ପାଳିବ ।

ଅଜା ମୋର
ଢୋଳେଇ ପଡ଼ିଲା;
ଘଣ୍ଟାରେ ଠିକ୍
ଆଠଟା ବାଜିଲା ।
ମୋ ପାଖରେ ବସିଥିବା
ବନ୍ଧୁ ସୁଶାନ୍ତ ପଚାରିଲା -
ବୁଢ଼ାକୁ କ'ଣ ବହୁତ ବାଧିଲା ?

ମନେ ପଡ଼ିଲା -
ଅଜା ମୋର
କହିବାର, ବହୁବାର
ଯେ ଆଶ୍ରମରୁ ସେ ଶିଖିଛି
Early to bed and
early to rise,
make a man
healthy, wealthy and wise.

ରାତି ବାରଟାରେ ସ୍ୱାଧୀନ ହୋଇଥିବା
ଭାରତର ମଣିଷଟା

ଏ ପଚାଶ ବର୍ଷ ଭିତରେ
କେତେ healthy, କେତେ wealthy, କେତେ wise
ଭାବି ଭାବି କ'ଣ
ଅଜା ମୋର, କ୍ଳୋଲେଇ ପଡ଼ିଲା ?

କୋକାକୋଲା ବୋତଲଟା
ସେମିତି ଠିଆ ହୋଇଥିଲା ।
ତା ମୁହଁରୁ ବାହାରିଥିବା
ଫେଣ ସବୁ
କେବେଠାରୁ ମରିଯାଇଥିଲା ।

(ରଚନା : ୧୯୯୮)

# ଭାରତବର୍ଷ

ଭାରତବର୍ଷ !
ଭଗ୍ନାବଶେଷ,
ଗାନ୍ଧୀର କଙ୍କାଳ,
ମୁକୁଟ ବୁଦ୍ଧର,
ଅଯୋଧାର,
ସ୍ୱର୍ଣ୍ଣ ମନ୍ଦିରର ।

ଭାରତବର୍ଷ !
ଆର୍ତ୍ତନାଦ ଅଗଣିତ ମଣିଷର,
ଦଉଡ଼ ଠେକୁଆର,
ଛାଇ ଅନ୍ତରୀକ୍ଷରେ ଭାସୁଥିବା
କେଉଁ ଏକ ଅସତ୍ୟ ଦ୍ୱୀପର ।

ଭାରତବର୍ଷ !
ମୋର ନୁହେଁ, ତୁମର ବି ନୁହେଁ
ସେମାନଙ୍କର ।
ଭୋଟ ବଢ଼ି ପରି ।
ତାଙ୍କ ପାଇଁ ଆମେ ପଟୁମାଟି
ଅତ୍ୟନ୍ତ ଉର୍ବର ।
ତାଙ୍କର ସୌଧ ଓ ମୀନାର
ଲାଗି ଆମେ ଦରକାର ।

ଭାରତବର୍ଷ !
ବହି ପୃଷ୍ଠାରେ ଗୋଟାଏ ଶୀର୍ଷକ,
କିଛି ଲୋଚା କୋଚା ଗାରଙ୍କର
ଏକ ସ୍ଥୂଳ ସମାହାର ।
ପ୍ରତିଶ୍ରୁତିର ସୌଦାଗାର,
ଧାଡ଼ି ବାନ୍ଧି ଠିଆ ହୋଇଥିବା
ପ୍ରଶ୍ନବାଚୀଙ୍କ ଆଗରେ ।

ଭାରତବର୍ଷ
ମୋ ପାଇଁ ସ୍ୱପ୍ନଟିଏ,
ଯାହା ବିକଳାଙ୍ଗ ହୋଇ ଆଜି
ମୋ ଆଗରେ ବାସ୍ତବ
ରୂପ ନିଏ ।

(ରଚନା : ୧୯୮୪)

# କଳାହାଣ୍ଡି କେ ବିକେ

କିଳାହାଣ୍ଡି !
ସେବା ବଜାରରେ ଏକ ଡକାହକା ନାଁ ।
ଟାଣି ଆଣେ କାହୁଁ କେଉଁଠାରୁ
ସେବକ ଶାଗୁଣା,
ବାଣ୍ଟିନେବା ପାଇଁ ତାହାର ଇଲାକା
ଚାଲେ ଭୁବନେଶ୍ୱର, ଦିଲ୍ଲୀ ଅବା ଲଣ୍ଡନରେ
ମନ୍ତ୍ରଣା ।

କଳାହାଣ୍ଡି ସତେ
ସେବା ବଜାରରେ ଏକ ଡକାହକା ନାଁ ।

ସେ ନାଁ ରେ ରହିଛି କୁହୁକ ।
ସେ ନାଁ ଯେଉଁଠି ଲାଗେ
ସେ ବିକେ ।
ତାର ଲହୁ ବିକେ, ଲୁହ ବିକେ,
ପିଲା ବିକେ, ଦୁର୍ଭିକ୍ଷ ବିକେ,
ତା ଚାଉଳ ବିକେ, ତା ଭୋକ ବିକେ,
ତା ଫଟ ବିକେ, ତା ଉପରେ ବହି ମଧ ବିକେ,
ଠିକ୍ ଟାଟା ନାଁ ଲାଗିଥିବା ଲୁଣ ପରି
ଅବା, ପେପ୍‌ସି ନାଁ ଲାଗିଥିବା ପାଣି ପରି ।

ଯିଏ ବିକେ
ତାର ପ୍ରତିଷ୍ଠା ବଢ଼େ,

ତାର ପଡିଆରା ବଢ଼େ ।
ସେ ସେବକ ବୋଲି କାଗଜ ଗରଜେ ।

ଟମ ଯେତେ ହାତକୁ ଢାବୁଡ଼ି ଧରେ,
ଶରୀରକୁ କ୍ଷୀଣ କରେ,
'ସେବକ'ର ମୁଣି ଓଜନିଆ ହୁଏ
ତା ମୁହଁରେ ହସ ଫୁଟେ;
ଟିଭିର ପରଦା ଉପରେ
ସେ ବେଶ ଉଜ୍ଜ୍ୱଳ ଦିଶେ ।
ସେବା ବଜାରର
ହେବା ପାଇଁ ଅଧୀଶ୍ୱର
ସେ ଦଉଡରେ ମାତେ ।

(ରଚନା : ୧୯୯୮)

# ଚମାଖଣ୍ଡି

ଧୂସର ଧୂମ୍ର ବଳୟ ଭିତରେ
ହଜିବାର ଭବିଷ୍ୟତ ନେଇ
ଏ' ପୃଥିବୀ ପୃଷ୍ଠକୁ ତୁ କ'ଣ
ଆସିଥିଲୁ ଚମାଖଣ୍ଡି ?

ତୋର ସବୁଜିମା
ତୋର ରତ୍ନଗର୍ଭା ମାଟି,
ତା ଉପରେ
ଖେଳୁଥିବା ପିଲାର ଅଧିକାର,
ସବୁକୁ ତ ଆଦରିଥିଲୁ
ତୁ ଚମାଖଣ୍ଡି;
ପୁରୁଷ ପୁରୁଷ ଧରି
ତୋ କୋଳରେ ବୁଲୁଥିବା
ମଣିଷକୁ ପରା ଦେଇଥିଲୁ
ଠିକଣା, ତୁ ଚମାଖଣ୍ଡି ।
ତୁ କ'ଣ କେବେ-
ସେ ଠିକଣା ନିଶ୍ଚିହ୍ନ ହେବାର
ଭବିଷ୍ୟତ ନେଇ
ଏ' ପୃଥିବୀ ପୃଷ୍ଠକୁ
ଆସିଥିଲୁ ଚମାଖଣ୍ଡି ?

ତୋ ମାଟିର ମଣିଷକୁ ଠିକଣା ଦେଇଥିଲୁ,
ମାଟିରୁ ଦେଇଥିଲୁ
ଧାନ, ମୁଗ, ମାଣ୍ଡିଆ;
ସୁବାସିତ କରିଥିଲୁ ପବନକୁ
ମାଛ ମାଳ ବୁଦାରୁ ଫୁଟିଥିଲା
କିଆ,
ସେ ସବୁ କ'ଣ ହଜିଯିବ ?
ଧୂସର ଧୂମ୍ର ବଳୟ ଭିତରେ
ବିଲୁପ୍ତ ହୋଇବ ?

(ତମାଖଣ୍ଡି ଗଞ୍ଜାମ ଜିଲ୍ଲାର ଗୋପାଳପୁର ଠାରେ ପ୍ରସ୍ତାବିତ
ଇସ୍ପାତ କାରଖାନାର ଇଲାକା ଭିତରେ ଅବସ୍ଥିତ ଏକ ଗାଁ ।)

(ରଚନା : ୧୯୯୭)

# ଦ୍ୱିତୀୟ ବନବାସ

ନା ଦଶରଥ ଥିଲେ,
ନା ଥିଲେ କୈକେୟୀ
ନା ଥିଲେ ଲବ କୁଶ,
ନା ଥିଲେ ବୈଦେହୀ;
ଥିଲା ପ୍ରକାଣ୍ଡ ଭିଡ଼,
କାନଫଟା କୋଳାହଳ ।
ପ୍ରେମ ଓ ଭକ୍ତିର ଥିଲା ତାଣ୍ଡବ ପ୍ରବଳ ।

ବଦଳାଇ ରୂପ ମୋର
ମୋ ନିଜର କଲି ଜୟ ଜୟକାର,
କିଛିଟା ନାଚିଲି ଓ
ଉନ୍ମତ୍ତ ହେବାର ବାହାନା କରିଲି ।
ଏ ସବୁର ଆଡୁଆଳେ
ମୁଁ ଗଲି ଅପସରି
ଭିଡ଼ ଠାରୁ ଦୂରେ, ବହୁଦୂରେ
କେଉଁ ଏକ ନିର୍ଜନ ଦ୍ୱୀପର ସନ୍ଧାନେ -
ଯେଉଁଠି ପଡ଼ିବନି କେବେ ଉନ୍ମତ୍ତ ଭକ୍ତଙ୍କ ଶିବିର,
କେହି ଗଢ଼ିବନି ମୋତେ ନେଇ କୌଣସି ମନ୍ଦିର,
କରିବନି ମୋତେ କେହି
ତା ପତାକାର ଚିହ୍ନ,
ନା ଉପୁଜିବ ଅବସର ଶୁଣିବାକୁ
ଅସହାୟ ବିଧବା କ୍ରନ୍ଦନ,

ନା ଧୂଆଁ ଦିଶିବ,
ନା ପୋଡା ମଣିଷର ଗନ୍ଧ ଆସିବ ।
ତୁମେ ଲଢୁଥାଅ, ଖୋଜୁଥାଅ
କେଉଁଠି ମୋ ଜନ୍ମ ଭୂମି,
ଗଢୁଥାଅ ମୋ ପାଇଁ ବସାଗୃହ ତୁମରି ପସନ୍ଦେ ।
ବିଡମ୍ବନା ଏତିକି ଯେ, ମୁଁ ଚାଲିଛି
କେଉଁ ଏକ ନିର୍ଜନ ଦ୍ୱୀପର ସନ୍ଧାନେ,
ତୁମ ଠାରୁ ବହୁଦୂରେ
ତୁମର ଉନ୍ମତ୍ତ ଭକ୍ତି ଓ ପ୍ରେମର
ପରିଧି ବାହାରେ ।

(ରଚନା : ୧୯୯୩)

# ବାଲ୍ମୀକିଙ୍କୁ ପ୍ରଶ୍ନ

ତୁମେ ମୋତେ କାହିଁକି
କରିଲ ସୃଷ୍ଟି,
ହେ ! ଋଷି ବାଲ୍ମୀକି ?
କାହିଁକି ଛଡ଼ାଇ ନେଲ
ମୋର ଅଧିକାର,
ଇତିହାସ ଗର୍ଭରେ ବିଲୀନ ହେବାର ?
ମୁଁ ସାଧାରଣ ରାଜା ଥିଲି,
ବାପା ମା ଥିଲେ, ମୋର ପିଲାପିଲି ଥିଲେ,
କିଛି ଭଲିଛି ନିଶ୍ଚୟ,
ମୋ ରାଜ୍ୟରେ ମୁଁ ହୁଏତ ସଭିଙ୍କୁ ସ୍ୱଚ୍ଛନ୍ଦ କରିଛି,
ସାଧାରଣ ରଜକର ସନ୍ଦେହରେ
ସ୍ତ୍ରୀକୁ ଛାଡ଼ିଛି,
ସାଧାରଣ ଲୋକଙ୍କର ଗାରିମା ବୁଝିଛି ।
ଏ ସବୁ ଠିକ୍, ସବୁ ସତ୍ୟ
ତଥାପି କ'ଣ ନାହିଁ ମୋର ଅଧିକାର
ଅଜଣା ଅଶୁଣା ହୋଇ ରହିଯିବାର ?

ଜବାବ ଦିଅ ବାଲ୍ମୀକି
କାହିଁକି ଛଡାଇ ନେଲ
ମୋର ଅଧିକାର,
ଇତିହାସ ଗର୍ଭରେ ବିଲୀନ ହେବାର ?

ମୁଁ ଯଦି ନ ଥାନ୍ତି ଆଜି
ଜନ ମାନସରେ

କାହାର ସୁଯୋଗ ଥାନ୍ତା
କରିବାକୁ ମୋତେ ହତିଆର ?
କାହିଁକି ବହିଥାନ୍ତା
ରକ୍ତର ନଦୀ ?
କାହିଁକି ଉଦବାସ୍ତୁ ହୋଇଥାନ୍ତେ
ନାଗରିକ, ଏତେ ନରନାରୀ ?
ଲକ୍ଷ ଲକ୍ଷ ବାସଗୃହ ଭାଙ୍ଗି
କାହିଁକି ଖୋଳୁଥାନ୍ତେ ମୋର ଜନ୍ମଭୂମି,
ଗଢୁଥାନ୍ତେ ମୋର ବାସଗୃହ ?
ତୁମେ ମୋତେ ଦେଇଥିଲ ଖ୍ୟାତି -
ମୁଁ ରାମ ରାଜ୍ୟ ଗଢ଼ିଛି,
ଯେଉଁଠି ମଣିଷ ମୁକ୍ତ
ମୁକ୍ତ ତାର ସବୁ ଅଭିବ୍ୟକ୍ତି ।
ସେହି ରାମ ଆଜି ବନ୍ଦୀ
ତାହାରି ନାମରେ ଆଜି ଧ୍ୱଂସର ତାଣ୍ଡବ ।
ହେ ଋଷି ପ୍ରବର !
ସବୁ ଭଲ ଗୁଣ ନେସି ନେସି କରିଥିଲ
ଯେଉଁ ଚରିତ୍ର ଗଠନ,
ତାକୁ ଗ୍ରାସିଛି କିପରି ଆଜି
ଏକ ସଇତାନ,
କବଳିତ କରି ତାକୁ
ଛାଡ଼ିଛି ଅସହାୟ କରି;
ତାର ଆତ୍ମାରେ ଗୁଳି ଭେଦି
ତା' ନାମକୁ ଅଫିମ କରିଛି ।
କୁହ ବାଲ୍ମୀକି !
ଏବେ ତୁମକୁ କିପରି ଲାଗୁଛି ?

(ରଚନା : ୧୯୯୩)

# ଶାଗୁଣାର ଲଜ୍ଜା

ଭଗବାନ ହୋଇଲେ ଚିନ୍ତିତ -
କମିଗଲେ ହଠାତ୍ ଶାଗୁଣା ।
କିପରି ହୋଇବ ପୁଣି ତାଙ୍କର ଭରଣା ?

ପଚାରିଲେ -
ପ୍ରଦକ୍ଷିଣ କରି ପୃଥିବୀକୁ ଫେରିଛ ନାରଦ,
କୁହ ଭରଣା କରିବାର
କ'ଣ କିଛି ରହିଛି ଉପାୟ ?

ନାରଦ କହିଲେ -
ବୁଲୁବୁଲୁ ଅବଶ୍ୟ ମୁଁ ଅନେକ ଭିତରେ
ଦେଖିଲି ଶାଗୁଣାଟିଏ ବସିଅଛି ଗଛର ଡାଳରେ ।
ପଚାରିଲି, ଏତେ ଶବ ସମୁଦ୍ର କୂଳରେ
ତୁ କାହିଁକି ବସିଅଛୁ ଏଠି
ନ ଯାଇ ସେଠାରେ ?

କହିଲା ଶାଗୁଣା -
ଲଜ୍ଜା ଲାଗୁଅଛି ମତେ
ମୋ ଠାରୁ ଅଧିକ ଖୁସି ଲୋକଙ୍କ ନେତାଏ ।
ଦେଖୁନାହଁ ପଡ଼ିଅଛି
ସେଠି କୁଢ଼ କୁଢ଼ ଶବ
କିନ୍ତୁ ରାଜଧାନୀ ପଟେ

ଚାଲିଅଛି ଯୁଦ୍ଧ
କିଏ ନେବ ମୁଖ୍ୟମନ୍ତ୍ରୀ ପଦ ।

କହିଲା - କହିବ ଯାଇ ତୁମ ଭଗବାନ ଠାରେ
ତାଙ୍କର ଏ ବିଚିତ୍ର ସଂସାରେ
କୁଢ଼ କୁଢ଼ ଶବ ଦେଖି ଶାଗୁଣା ଲଜ୍ଜା ପାଇପାରେ
ଅଥଚ ତା ସୃଷ୍ଟିର ଶ୍ରେଷ୍ଠ ଜୀବ
ଖୁସି ହୋଇପାରେ
କ୍ଷମତା ହାସଲ ପାଇଁ
ସୁଯୋଗକୁ ମାଡ଼ି ବସିପାରେ ।

(ରଚନା : ୨୦୦୦)

# ଭୂମିକମ୍ପ : ତିନୋଟି ପ୍ରତିକ୍ରିୟା

ସବୁ ଭାଙ୍ଗି ପଡ଼ିବା ପରେ -
ମୃତ୍ୟୁ ଏତେ ସହଜରେ ଆସି
ତୁମକୁ ଆଦରି ନେବା ପରେ -
ତୁମେ ସବୁ ନିର୍ବାକ୍ ହେଇ -
ଆଉ ମୋତେ ଶମ୍ଭିବାକୁ
ଆରମ୍ଭ କରିଲ ।

କାହିଁକି ମୁଁ ତୁମକୁ ଆଗରୁ
ନ କହିଲି
ଯେ ମୁଁ ଆସୁଛି ବୋଲି ।

ମୋ ପେଟ ଭିତରର କଥା
ତୁମକୁ କାହିଁକି
କହିଥାନ୍ତି ଯେ ।

ତୁମେ କ'ଣ କହିଥିଲ -
ଗାନ୍ଧୀକୁ ମାରିବ ବୋଲି ?
ତୁମେ କ'ଣ କହିଥିଲ
ଅଞ୍ଜନାକୁ ଧର୍ଷଣ କରିବ ବୋଲି ?
ତୁମେ କ'ଣ କହିଥିଲ
ଗ୍ରାହାମ୍ ଷ୍ଟେନ୍ସଙ୍କୁ
ପୋଡି ଦେବ
ତାଙ୍କ ଶିଶୁ ପୁତ୍ର ସହ ?

ନା, କହୁଛ କେତେବେଳେ ଆସିଯିବ,
ଆଉ ସୁନ୍ଦରୀ କାଶ୍ମୀରୀ ଲଳନା,
ଅବୋଧ ସୁନ୍ଦର ଶିଶୁଙ୍କୁ
ନିର୍ମମ ମାରିବ ?

ତୁମେ କେହି
ତୁମ ପେଟ ଭିତରର କଥା
ଆଗରୁ କହିନାହଁ, କହୁନାହଁ ।
ଅତର୍କିତ ଆସି -
ତୁମ କାମ ଫତେ କରି
ନିର୍ବିଘ୍ନେ ଯାଉଛ
ମାଟି ଉପରେ ବସିଥିବା
ତୁମ ଇଷ୍ଟଦେବଙ୍କର
ଶରଣରେ ଥାଇ
ଅସହାୟ ମଣିଷଟିକୁ
ବେଶ ବିଦ୍ରୂପ କରିଛ -
ଆଜି ତେଣୁ
ମୋତେ କାହିଁକି ଶମୁଛ ?

ଅତର୍କିତ ତୁମେ ହୋଇପାର
ଆଉ ମୁଁ ହୋଇ ପାରେନା ?
ତୁମେ ମୋ ଛାତି ଉପରେ ଠିଆହେଇ
ଯାହା ଇଚ୍ଛା ତାହା କରିପାର -
ମୁଁ ତାର ପ୍ରତିବାଦ କରିପାରେ ନା ?



ସହରଟା ତାସ ଘର ପରି
ଭୁଷୁଡ଼ି ପଡ଼ିଲା -
ଭୁଷୁଡ଼ି ପଡ଼ିଲା ତାର
ଗର୍ବ, ଅହଂକାର ।
ସମସ୍ତଙ୍କୁ କନ୍ଦାଇ ଥିବା ଲୋକଟି
ଶିଶୁ ଭଳି ଅସହାୟ କାନ୍ଦିଲା ।
ସମସ୍ତଙ୍କ ଠାରୁ ସାହାରା ଛଡ଼ାଇ
ନେଇଥିବା ଲୋକଟି
ବିଚରା ଏତେ ବେସାହାରା
ହୋଇଗଲା !

ସହରଟା ତାସ ଘର ପରି
ଭୁଷୁଡ଼ି ପଡ଼ିଲା ।

ଭଲ ହେଲା, ନା ଖରାପ ହେଲା -
ମଞ୍ଚ ଗୁଡ଼ା କିନ୍ତୁ ଧରାଶାୟୀ ହେଲା -
କଂସ ମଞ୍ଚରୁ ଗଡ଼ିଲା
ସତ -
ତା ସହିତ ମଲେ ମଥୁରାର
ସାଧାରଣ ଲୋକେ -
ଅନେକେ ।
ଏହାହିଁ ଖରାପ ହେଲା ।
ଭଲ ହେଲା କଂସ ମଲା -
ଆଉ ଏକ ସମାଜ ଗଢ଼ିବାର

ସମ୍ଭାବନା ସୃଷ୍ଟି ହେଲା
କିନ୍ତୁ କିଏ ଜାଣେ -
ଯାହା କିଛି ଭଲ ଥିଲା -
ତା ସବୁଦିନ ପାଇଁ
ଯେ ସମାଧି ନ ନେଲା ।



ତୁମେ ମୋତେ ଜୟ କରିବା ପାଇଁ
କୌଶଳ କାଢ଼ିଲ ।
ମୁଁ ବାରମ୍ବାର ତୁମକୁ କହୁଥିଲି -
ଆସ ସାଥି ହୋଇ ରହିବା ।

ତୁମେ କିନ୍ତୁ ନା ମୋ ଭାଷା ବୁଝିଲ
ନା ମୋ ବ୍ୟାକରଣରେ ମୁଣ୍ଡ ପୂରାଇଲ
ତୁମେ ମୋତେ ବିକଳ କରିଲ -
ବିକଳାଙ୍ଗ କଲ -
ସଭାସମିତି, ସେମିନାର କରି
ମୋତେ ଜୟ କରୁଛ ବୋଲି
ବକ୍ତବ୍ୟ ବାଢ଼ିଲ ।

ତୁମ ସୃଷ୍ଟିକୁ ମୁଁ ଅପେକ୍ଷା କରିଥିଲି
କେତେ ଆଶା ନେଇ -
ଯେ, ମୋ ଗର୍ଭରେ ଯିଏ ବଢ଼ୁଛି -
ସେ ଏ ସୃଷ୍ଟିର ସବୁଠାରୁ ସୁନ୍ଦର ଜୀବ ହେବ -
ଜନ୍ମ ହେଲେ, ସବୁ ସୁନ୍ଦର ଦିଶିବ -

ଏ ମାଟି, ଆକାଶ, ଜଳ, ଜଙ୍ଗଲ,
ସବୁ କିଛି ।
କିନ୍ତୁ କିଏ ଜାଣିଥିଲା ଯେ
ପର୍ଶୁରାମ ମୋ ଗର୍ଭରେ ବଢ଼ୁଛି ?
ମୋର ସବୁ ହାରି, ଗୁହାରି
ସାଥିରେ ରହିବା ପାଇଁ ସବୁ ଅନୁରୋଧ
ସବୁଥିଲା ଅର୍ଥହୀନ
ତୁମ ପାଇଁ ।
ତୁମେ ଧରି ନେଇ
ମୁଁ ନିଶ୍ଚିତ ବିଜିତ
କେବଳ ସମୟର କଥା ।
ତୁମେ ବୋଧେ ଭୁଲ କଲ ।
ମୁଁ ଜାଣେ ନାହିଁ
ଏଥିପାଇଁ ତୁମେ କେତେ ଅନୁତପ୍ତ -
କିନ୍ତୁ ମୁଁ ନିଶ୍ଚିତ ଦୁଃଖିତ
ଯେ ଭୂପୃଷ୍ଠରେ ଏତେ ବଡ଼ ଦୁର୍ଘଟଣା ହେଲା ।

(ରଚନା : ୨୦୦୧)

# ଅଭିଷେକ

ସିଂହାସନର
ଦୁଇ ଖୁରାରେ ଉଇ ଲାଗିଛି ।
ଅଗଣାର ବରଗଛ ତଳେ କିନ୍ତୁ
ଅଭିଷେକ ଚାଲିଛି ।
ନିଆଁ ଜାଳିଲେ ସବୁ ବିଘ୍ନ ଚାଲିଯିବ,
ମୁଁ ବ୍ରାହ୍ମଣ ସାଜି, ତେଣୁ, ହୋମ ସଜାଡୁଛି ।
ସିଂହାସନର ଦୁଇ ଖୁରାରେ ଉଇ ଲାଗିଛି ।

ମୁଁ କିଏ କରିବାକୁ ପ୍ରଶ୍ନ
ଅଭିଷିକ୍ତ ମଣିଷର ଓଜନ ବା କେତେ ?
ମୁଁ କିଏ କରିବାକୁ ପ୍ରଶ୍ନ
ଏ ସିଂହାସନର ପରମାୟୁ କେତେ ?
ମୁଁ ମୋର ପାଉଣା ପାଇଛି,
ତେଣୁ ହୋମ ସଜାଡୁଛି ।
ସିଂହାସନର ଦୁଇ ଖୁରାରେ
ଉଇ ଲାଗିଛି ।

(ରଚନା : ୧୯୮୫)

# ଅଭିସାର

ପାହାଚ ଉଠିବା ପାଇଁ

ମସୁଧା ଚାଲିଛି ।

ଆତଯାତ ବହୁ ନୂଆ ମୁହଁ,

ଫୁସ୍ ଫାସ୍ କଥାବାର୍ତ୍ତା

କମା, ପୂର୍ଣ୍ଣଛେଦ, ବନ୍ଧନୀ ବର୍ଗ ଓ କୁଟିଳ,

କିଛି ଚାପା ହସ, ଲୁଚି ଛପି ଚକ୍ର ଓ ପ୍ରଚକ୍ର,

ପ୍ରତିଶ୍ରୁତି କିଛି ଆଉ ପ୍ରତିଦାନ କିଛି,

ପାଗଟାକୁ ଗୁମ୍‌ସୁମ୍ କରିଛି ।

ପାହାଚ ଉଠିବା ପାଇଁ

ମସୁଧା ଚାଲିଛି ।

ଦୃଶ୍ୟ ତ ଅଦ୍ଭୁତ -

ପ୍ରତିଟି ମଣିଷ ଆଜି

ଗୋଟିଏ ଗୋଡରେ ଠିଆ ।

ଆର ଗୋଡ଼ ଶୂନ୍ୟରେ ଝୁଲୁଛି

ଆଉ ପାହାଚ ଖୋଜୁଛି ।

ଯେ ପାହାଚ ବଢ଼ାଇବ

ସେ କିଛି ମୂଲ୍ୟ ନେବ ।

ତେଣୁ, ପ୍ରତ୍ୟେକ ପାହାଚ,

ଆଜି ନିଲାମ ହେଉଛି ।

ଆଉ ଗୋଡ଼ ଶୂନ୍ୟରେ ଝୁଲୁଛି ।

ପାହାଚ ଉଠିବା ପାଇଁ

ମସୁଧା ଚାଲିଛି ।

(ରଚନା : ୧୯୮୫)

# ଅଭିଶାପ

ଆମେ ସବୁ କୁବ୍ଜ
ପରସ୍ପରର ସୌନ୍ଦର୍ଯ୍ୟରେ ରହିଛୁ ବିମୁଗ୍ଧ ।
କୁବ୍ଜହୀନ ମଣିଷଟି ଆମ ପାଇଁ
କଦାକାର, କୁତ୍ସିତ,
ସଦା ଅନିମନ୍ତ୍ରିତ ।

ଆମ ପାଇଁ ସିଧା ଠିଆ ହେବା,
ଅନାଇବା ଉପରକୁ,
ଦୃଷ୍ଟିକୁ ପ୍ରସାରିଦେବା,
ଚଉହଦି ତିଆଇଁବା,
ହୋଇଛି ଅବୈଧ ।
ଆମେ ସବୁ କୁବ୍ଜ
ପରସ୍ପରର ସୌନ୍ଦର୍ଯ୍ୟରେ ରହିଛୁ ବିମୁଗ୍ଧ ।

(ରଚନା : ୧୯୮୫)

# ରାବଣପୋଡ଼ି

କିଏ କାହାକୁ ପୋଡୁଛି,
ଯଦି ରାବଣ ରାବଣକୁ ନୁହେଁ ?

ମଞ୍ଚରେ ବସିଛି ରାବଣ,
ପାଳମୂର୍ତ୍ତି ରାବଣ ଜଳୁଛି ।
ନିଶାଗ୍ରସ୍ତ ଜନତାର କରତାଳି
ପଡୁଛି ଉଠୁଛି ।

କିଏ କାହାକୁ ପୋଡୁଛି
ଯଦି ରାବଣ ରାବଣକୁ ନୁହେଁ ।

(ରଚନା : ୧୯୯୭)

# ତୁମକୁ କ୍ଷମା ନାହିଁ

ସବୁ ଶବ୍ଦକୁ ତୁମେ ମାରିନେଲ ।
ଛଳନାର ପ୍ରତିମୂର୍ତ୍ତି ହୋଇ
ଛଳନା ଛାଡ଼ିବା ପାଇଁ ଆହ୍ୱାନ ବାଢ଼ିଲ;
ଯେଉଁ ହାତେ ଖିନ୍ ଭିନ୍ ନୀତିକୁ କରିଲ
ଠିକ୍, ସେହି ହାତେ ଜ୍ୟୋତିକୁ ଧରିଲ ।
ଧର୍ଷଣର ଅପରାଧୀ ତୁମେ
ଧର୍ଷଣ ବିରୋଧୀ ମଞ୍ଚେ ସଭାପତି ହେଲ ।

ସତେ, ତୁମେ
ସବୁ ଶବ୍ଦକୁ ମାରିନେଲ ।

କ୍ଷମତା, ଧନ ଓ ପ୍ରତିଷ୍ଠାକୁ ତ କବଳିତ କରିଥିଲ
ହେ! ସମାଜପତି,
ଏବେ ଶବ୍ଦ ଗୁଡ଼ିକୁ ମଧ୍ୟ ଛଡାଇ ନେଲ;
ଯାହା ମୁହଁରେ ସେ ଶବ୍ଦ ସୁନ୍ଦର ଶୁଭନ୍ତା
ତାକୁ ନାମମାତ୍ର କରିଦେଇ,
ସେ ଶବ୍ଦକୁ ଅନ୍ତଃସାର ଶୂନ୍ୟ କଲ ।
ଶବ୍ଦ ଯଦି ସତେ ପରଂବ୍ରହ୍ମ
ତୁମକୁ କ'ଣ ସେହି ବ୍ରହ୍ମ
କେବେ କ୍ଷମା ଦେବ ?

(ରଚନା : ୧୯୯୭)

# ନୂଆ ନୁହେଁ କିଛି

ଇଏ ନୂଆ ନୁହେଁ କିଛି -
ଏଠୁ ରବି କାନ୍ଦି ପଳାଇଛି,
କାନନ ପାଗଳ ହୋଇଛି,
ସୂର୍ଯ୍ୟ ସାହି ପିଲା ହୋଇ ମଧ
ଧକିଆ ଖାଇଛି,
ଭାଗ୍ୟଧର, କବିତାକୁ ପଚାରେ ବା କିଏ
ପୀତବାସ ତେଣୁ ଏଠୁ ବାହାରି ପଳାଏ ।

ଏଠିତ ଗୋଟିଏ ନୀତି,
ହାଲୁକା ହୋଇଲେ
ଯାଇ ଉପରକୁ ଗତି ।
ଉପରକୁ ଯିବା ପାଇଁ
କୌଣସି ନିୟମ ନାହିଁ ।
ପ୍ରେମ, ଯୁଦ୍ଧ, ରାଜନୀତି ପରି
ସବୁ ପନ୍ଥା ସାଧୁ ଏଠି
ଚାହଁ ଯଦି ତୁମେ ପଦୋନ୍ନତି ।

ଇଏ ନୂଆ ନୁହେଁ କିଛି -
ଏଠି ବିବେକ ଭ୍ରଷ୍ଟ ହୋଇଛି;
ଆଉ ନୀତି କବର ନେଇଛି ।
ସିଂହକୁ ମାଇଚିଆ କରି
ଛେଳି ଆଜି ଓସ୍ତାଦ ସାଜିଛି ।

(ରଚନା : ୧୯୮୫)

# ବନ୍ଦ ସବୁ ପଥ

ଏଠି ସବୁ ପଥ ବନ୍ଦ,
ଯିବା ଓ ଆସିବା,
ସୃଷ୍ଟି ଓ ପ୍ରସବ ପଥ
ସବୁ ପଥ ବନ୍ଦ ଏଠି
ସବୁ ପଥ ବନ୍ଦ ।

କ'ଣ ବା ଦରକାର ପଥ ?
କାହାର ବା ଦରକାର ଏଠି ବାହାରକୁ ଯିବା
ତୁମେ, ମୁଁ ବା ଏହିଭଳି ଜଣେ ଦୁଇଜଣ ଛଡ଼ା,
ଯେଉଁମାନେ ଶ୍ୱାସରୁଦ୍ଧ
ପଡ଼ି ଏହି କୃଷ୍ଣଗର୍ତ୍ତ ତଳେ,
ବସିଛନ୍ତି ହାତ ଦେଇ
ପ୍ରଶସ୍ତ କପାଳେ ।

କ'ଣ ବା ଦରକାର ପଥ ?
ସୂର୍ଯ୍ୟର ବି ଦରକାର କ'ଣ
ଉଇଁବା ସକାଳେ ?

(ରଚନା : ୧୯୮୫)

# କ୍ଷମାକର

ଗୁଳିମାରି, ଫାଶୀ ଦେଇ
ତୁମକୁ ନିଶ୍ଚିହ୍ନ
କରିବାର ସମସ୍ତ ଉଦ୍ୟମ
ବିଫଳ ହେବାପରେ,
ତୁମର ମର ଶରୀରକୁ
ଫୁଲ ମାଳରେ ଢାଙ୍କି
ତୁମକୁ ନିଶ୍ଚିହ୍ନ କରିଦେବାର
କାରସାଦି ଚାଲିଛି କି ?

କିନ୍ତୁ ସତର୍କ କରାଇବ କିଏ ?

ତୁମକୁ ଛବିଟିଏ କରିଦେଇ
ଯେଉଁମାନେ ଫଟ ଭିତରେ
ତୁମକୁ ବାନ୍ଧି ଦେଲେଣି,
ତୁମକୁ ପଥର କରି
କୌଣସି ଛକରେ
ଠିଆ କରାଇବାର ଯୋଜନା କଲେଣି,
ଯେଉଁମାନଙ୍କ ନଳୀରୁ
ତୁମ ପାଇଁ ଗୁଳି
ତିଆର ରହୁଥିଲା
ସେମାନଙ୍କ ମୁଣ୍ଡିରୁ ଅନୁଦାନ ପାଇଁ

ଯିଏ ଧାଡ଼ି ବାନ୍ଧିଲେଣି,
ସେମାନେ କ'ଣ ସତର୍କ କରାଇବେ ?

ତୁମେ ତୁମ ଜୀବନ କାଳରେ
ନା ଭଗବାନ ମାନିଛ
ନା ଭୂତ ପ୍ରେତରେ ବିଶ୍ୱାସ କରିଛ ।
ଯେଉଁଠି ବୁହେ ଭୂତ
ସେ ଜଙ୍ଗଲରେ ବସା ବାନ୍ଧି ଜୀବନ କାଟିଛ ।
ଆଜିଠାରୁ ତୁମେ
ଯଦି ଭୂତ ହୋଇ
ତୁମକୁ ଫୁଲମାଳ ଦେଇ ନିଶ୍ଚିହ୍ନ କରିବା ପାଇଁ
ଉଦ୍ୟତ ମଣିଷ ମାନଙ୍କୁ ଡରାଇ ପାରନ୍ତ,
ତା ହେଲେ ଯାହାପାଇଁ ତୁମେ ଲଢ଼ିଥିଲ,
ତାଙ୍କ ହୃଦୟରେ ଚିରକାଳ ରହିଯା'ନ୍ତ, ରହିଯା'ନ୍ତ ।

କ୍ଷମାକର, ନାଗଭୂଷଣ
ମୁଁ ତୁମକୁ ଅବତାର କରିପାରୁ ନାହିଁ ।
ଭୟ ମୋର, ତୁମେ ଅବତାର ହେଲେ
ସେମାନେ ତୁମକୁ ଗୋଟାପଣି କରିନେବେ
ଆଉ ନିର୍ଭୟରେ ନିଶ୍ୱାସ ମାରିବେ ।

(ରଚନା : ୧୯୯୮)

# ଯାଯାବର

ଗଛର ଡେଣାରେ ଝୁଲେ ବାଦୁଡ଼ିର ମାଳା ।
ସେହି ଡେଣା ତଳେ ଝୁଲେ ଯାଯାବର ପିଲା ।
ସେହି ଗଛ ତଳେ ଶୁଏ
ମା, ବାପା, ତାର ଗୋଷ୍ଠୀ ।
ତାଙ୍କ ପାଇଁ ଜ୍ୟୋତିଷ ନାହିଁ,
ଲେଖେ ନାହିଁ କେହି ତାଙ୍କ କୋଷ୍ଠୀ ।
ସେଇଠି ସମୟ ଯାଏ,
ଖରାଯାଏ, ସନ୍ଧ୍ୟା ଆସେ,
ବୟସ ବି ଖସି ଖସି ଯାଏ ।
ସେହି ଗଛ ଡାକୁ ଶୁଭେ କୋଇଲିର ସ୍ୱନ;
ସେ ଗଛ ଉପରେ ପିଟେ ବସନ୍ତ ପବନ ।
ଶୀତ, ଖରା ତାହାରି ଉପରେ ଯାଏ;
ଯାଯାବର ପିଲା କିନ୍ତୁ ଝୁଲି ରହିଥାଏ ।
ତା ଉପରେ ଚାନ୍ଦିନୀ ଛାଏ,
ସେ କିନ୍ତୁ ଜୋଛନା ବୁଝେନା;
ତା ଗଳାରେ ସାପ ଖେଳେ
ସେ କିନ୍ତୁ ନୀଳକଣ୍ଠ ସାଜେନା ।
ସେ ଗଛ ଡାଳରେ ଝୁଲେ,
ଶୁଏ ପୁଣି ଧରଣୀ ପଦାରେ,
ଖୋଜେନା ସେ ବଞ୍ଚିବାର ମୂଲେ,
ବୁଲେ ନା ସେ ସଫଳ ଆଶାରେ ।

ତଥାପି,
ହେଲେ ବି ସେ ଯାଯାବର ପିଲା,
ତା ଆଗରେ ଯୌବନର ସ୍ୱାଦ ଅଛି
ମାଂସଳ ଦେହରେ ।
ତା ଆଖିରେ କ୍ଷୁଧା ମଧ୍ୟ ଅଛି,
ଆଉ ଅଛି ଅହେତୁକ ଡାକ ।
ତା ଆଖିରେ ଅନଳର ରାଗ
ଧନିକର ଐଶ୍ୱର୍ଯ୍ୟ ବିରୁଦ୍ଧେ ।

କିନ୍ତୁ,
କାହିଁକି ମୁଁ ଦେଖେ
ଏତେ ଶାନ୍ତି ... ଏତେ ଯେ ପ୍ରଶାନ୍ତି
ଏତେ ରାଗ ... ଏତେ ଅନୁରାଗ
ସେହି ଗଛ ଡେଣାଟିର ତଳେ,
ଯାହା ତଳେ ସେ ଝୁଲେ
ଜନ୍ମ ପରେ ପରେ
ଆଉ ଆମେ ନେଉ ବିଶ୍ରାମ
ତାହାରି ତଳେ ଚିରଦିନ ପାଇଁ ।

(ରଚନା : ୧୯୬୮)

# ପଣ୍ୟ ପସରାରେ ପ୍ରତିବାଦ

**ମୋ** ଉପରେ
ସନ୍ଦେହ ମୋର -
ପ୍ରତିବାଦ ସ୍ୱର ମୋର
କ'ଣ ସତରେ ପ୍ରଖର ?

ନା' ରଣନୀତି
ମୁଁ କରିଅଛି ସ୍ଥିର -
ପ୍ରତିବାଦ ବିକି
କରିବି ବେପାର ?

ଖୋସାମତି ବିକେ ଯେଉଁ ଦରେ,
ପ୍ରତିବାଦ ବିକେ ତା'ଠୁ ଅଧିକରେ ।
ଦୁଇଆଡୁ ଲାଭ ହୋଇପାରେ -
ନାଁ ହୁଏ, ପ୍ରତିଷ୍ଠା ବି ମିଳେ
ପ୍ରତିବାଦୀ ମଣିଷ ଭାବରେ;
ମୂଲ୍ୟ ମିଳେ
ପୁଞ୍ଜି ପଣେ ବେପାର ଭିତରେ ।

ସର୍ବହରା ମୋ ଉପରେ
ବିଶ୍ୱାସ ରଖେ,
ରଖେ ପୁଞ୍ଜିପତି ।
ଜଣକ ବିପତ୍ତି ବିକି
କରିପାରେ ମୋର ସମ୍ପତ୍ତି ।

ରହିଅଛି ସମ୍ଭାବନା ତ ଅନେକ
ରହିଅଛି ପ୍ରଲୋଭନ ବି ଅନେକ
ସେମାନଙ୍କୁ କବଳିତ କରିବାରେ
ମୁହିଁ ଅଟେ ଅତି ଅସମର୍ଥ
ତେଣୁ, ମୋ ଉପରେ
ସନ୍ଦେହ ମୋର
'ପ୍ରତିବାଦ' ବିକି ମୁଁ
ବସିଛି କି କରିବି ବେପାର ?

(ରଚନା : ୧୯୯୩)

# ଫୁଲବାଣୀ

ମୁଁ ଦେଖିଲି -
ସାଲୁଙ୍କିର ତଟେ
ନାଲି ମାଟି, କଳା ଦେହ
ଆଉ ସୃଷ୍ଟିର ବିଭବ ।

ମୁଁ ପାଇଲି
ଡମି ଗାଁ ଠାରେ
ଆଧୁନିକ ଯୁଗର ବାରତା ।

ତା ପାହାଡେ ଚଢୁଥିଲା ବେଳେ
ମନେ ମୋର ଉଠୁଥିଲା ସେ ବଣୁଆ ଡାଡି,
ଝାଳ ମୋର ବହୁଥିଲା
ଆଦିମ ଗର୍ବରେ, ଫୁଲୁଥିଲା ଛାତି ।

ନ ଥିଲା ଆଶାର ମୀନାର,
ଅବା ନିରାଶାର ଅନିର୍ଣ୍ଣୟ ଗର୍ତ୍ତ ।
ଥିଲା ତହିଁ ମୁକ୍ତ ଅବକାଶ
କଳିବାକୁ ଆକାଶ ବକ୍ଷରେ
ପକ୍ଷୀର ବେପରୁଆ ଭାବ ।

ପୁଣି ମୁଁ ପାଇଲି -
ସେହି ଗାଁର ଶୂନ୍ୟତା ଭିତରେ

କେତେ ରୂପକଳ୍ପ
ସରଳ, ସଂକ୍ଷିପ୍ତ;
କେତେ ନୂଆ ଅଭିବ୍ୟକ୍ତିର ନମୂନା;
ଫୁଲ କିଛି ଅନାବନା ।

କାନରେ ପଡ଼ିଲା ବାଣୀ
ଅତ୍ୟନ୍ତ ମଧୁର,
ଇଚ୍ଛାଥିଲା ରହିବାକୁ
ଆଉ କିଛି ଦିନ
ଦେଖିବାକୁ ପ୍ରକୃତିକୁ
ଆହୁରି ଗଭୀର ।

(ରଚନା : ୧୯୭୧)

# ସମୟ

ଏହି ଭଳି ଆସେ
ଆଉ ଯାଏ,
ପରିଚିତ ମୁହଁ ସବୁ ଅଚିହ୍ନା ହୁଏ,
ଅପରିଚିତ ସହ ପରିଚୟ ହୁଏ ।

ପୁଅର ନାକ ତଳେ ନିଶର ଛାଇ ଦିଶେ,
ସ୍ତ୍ରୀର କୁନ୍ତଳ ଧୂସର ହୁଏ,
ସମୟ ଯାଉଛି ବୋଲି ଇଶାରା ମିଳେ ।

ସେ ଦିନର ଚିପା ସାଲୱାର
ତଳ ଦେହଟା
ଶାଢ଼ୀକୁ ବି ବୁକେଇ ପଡ଼େ ।

ମୋର ଶୀଥିଳ
ଉଦ୍ଦାମତା ସହ
ତାଳ ରଖି ସବୁ ଠିକ୍ ଚାଲେ,
ତାହାରି ଭିତରେ କିଛି ହୋଇଯାଏ
ଦୁନିଆର ହାନି ଲାଭ,
ମୋ ଇଚ୍ଛାରେ ନୁହେଁ କି ତୁମ ଇଚ୍ଛାରେ ନୁହେଁ,
ସେ କେଉଁ ଅଦୃଷ୍ଟର ଇଚ୍ଛାରେ ।

(ରଚନା : ୧୯୯୦)

# ସନ୍ଧ୍ୟା

ସନ୍ଧ୍ୟା ଘାରେ ଶିଥିଳ ସୂର୍ଯ୍ୟକୁ
ନିଦ୍ରାପରି କ୍ଲାନ୍ତ ଶ୍ରମିକକୁ ।
ଧୂସରିତ ସୂର୍ଯ୍ୟ ମୁଖେ,
ଯବନିକା ନଇଁ ନଇଁ ଆସେ;
କ୍ଲାନ୍ତ ଶ୍ରମିକ ପରି
ସେ ଶାନ୍ତ ହୋଇ, ଅସ୍ତମିତ ହୁଏ ।
ଜ୍ୟୋତିହୀନ ଆକାଶକୁ ଦେଖି
ଲଜ୍ଜାପାଏ ବିସ୍ତୀର୍ଣ୍ଣ ଧରଣୀ ।
ଠିଆ ହୁଏ ପ୍ରଶ୍ନବାଚୀ
କେଉଁଠି ଆକାଶ ସତେ କେଉଁଠି ଧରଣୀ ?

ନା, ସନ୍ଧ୍ୟା ଆସେ
କରିବାକୁ ସଞ୍ଜୀବିତ
ପ୍ରେମ ଆକାଶ ମାଟିର
ଆକାଶକୁ କରି ଆହୁରି ପ୍ରଶସ୍ତ
ଓ ଧରଣୀକୁ ଆହୁରି ବିସ୍ତୃତ ?

ସନ୍ଧ୍ୟା ଆସେ
ଆକାଶ ବୁକୁରେ
ଧରଣୀ କୋଳରେ
ଦମ୍ପତି ମନରେ
ଭାଗିରଥୀ ତୀରେ

ନଗରେ ନଗରେ
ବହୁ କୋଳାହଳ ଓ ଶୂନ୍ୟତା ଭିତରେ ।

ସନ୍ଧ୍ୟା ଆସେ ନିତିଦିନ,
ତଥାପି ଆସେ ସିଏ ଅନେକ ନୂତନ ହୋଇ,
ଆଭରଣ ତାର ବଦଳାଇ,
ଭିନ୍ନ ମନ ପାଇଁ, ଭିନ୍ନ ସନ୍ଦେଶ ନେଇ ।

ସନ୍ଧ୍ୟା ଆସେ
ମନେ ହୁଏ ଚୁମୁଛି ଆକାଶ,
କେଉଁ ଦୂର ଦିଗବଳୟେ
ପୃଥିବୀର ମସୃଣ ଚିବୁକ ।
ମନେ ହୁଏ, ଆକାଂକ୍ଷାର ଶେଷ ହେବ
ଆଜି ଏ ସନ୍ଧ୍ୟାରେ;
କାମନାର ଦାବାନଳ ଲିଭିଯିବ
ଆଜି ଏ ସନ୍ଧ୍ୟାରେ ।
ତା ପରେ ବି ସନ୍ଧ୍ୟା ଆସେ
ଆସେ ତା ପରଦିନ
ଆସିବା ପାଇଁକି ?

(ରଚନା : ୧୯୭୦)

# ଶେଷ ମୁହୂର୍ତ୍ତ

ମୋର ଅହଂକାର, ଗର୍ବ ଓ ଗୌରବ,
ମୋର ବିଶ୍ୱାସ, ସମ୍ପର୍କ ଓ ବୈଭବ,
ସମସ୍ତେ ମୋ ଚାରିପଟେ ଠିଆ ହୋଇ
ହସୁଥିଲେ, - ଉଦ୍ଦାମ ହସୁଥିଲେ ।
ଆଉ ମୁଁ ଖସୁଥିଲି, ସେହି ଶିଉଳି ଲଗା
ପଥର ଉପରେ - ପାଣିର ଧାରରେ ।
ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ
ଏକାକାର ହୋଇ ଖସୁଥିଲେ
ମୋରି ସଙ୍ଗରେ ।

ସତେ, ଏତେ ପାଖାପାଖି ହୋଇପାରେ
ମଣିଷ ସେହି ଶେଷ ମୁହୂର୍ତ୍ତର !

ଏତେ ଏକାନ୍ତ ଓ ଆପଣାର ହୋଇପାରେ
ସେହି ଶେଷ ମୁହୂର୍ତ୍ତର !

ଏତେ ସୂକ୍ଷ୍ମ ହୋଇ ଏକ ହୋଇପାରେ
ସେହି ଶେଷ ମୁହୂର୍ତ୍ତର !
ଯେଉଁଠି ସମୟ ହରାଏ ସଂଜ୍ଞା,
ହୁଏ ପରିଭାଷା ହୀନ,
ହୋଇପାରେ ଯହିଁ
ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ
ସମୁଦାୟ ଲୀନ !

କାହିଁକି ଭୟ ତେବେ
ସେହି ଶେଷ ମୁହୂର୍ତ୍ତକୁ ?
ଯେଉଁଠି ଆସେ ଅବସର
ସମୟର ପରିସୀମା ବାହାରେ ଯିବାକୁ ।

(ରଚନା : ୧୯୮୭)

# କାମନା

ଆଜି ବନ୍ଧୁ !
ଯାଉଅଛି ବିଚ୍ଛେଦର ହିମଦେଶେ
ନିରୁଦ୍ଦିଷ୍ଟ ହୋଇ
ମୃତ୍ୟୁ ପଥେ
ଅବା କେଉଁ ଭଗ୍ନ ସମ୍ପର୍କରେ,
ଯାହାକୁ ପାରି ନାହିଁ ଭାବି,
କେତେ ବୁଦ୍ଧି, କେତେ ତର୍କ ଦେଇ ।
ରହିଥିଲା, ରହିଛି ସେ
ହୋଇ ଏକ ଗଭୀର କାମନା ।
ସେ ରହିଛି ରୁଦ୍ଧ ହୋଇ
ଛଳନାର ସବୁ ଖେଳ ତଳେ ।
ନୀରବରେ ଅଶ୍ରୁ ହୋଇ
ବହିଛି ସେ,
ବହ୍ନି ହୋଇ ଜଳିଛି ସେ
ଶତ କୋଳାହଳେ ।
ସେଥିରେ ଯାଉଛି ଜଳି
ଏ ହୃଦୟେ ସହସ୍ର ଛଳନା ।
କାମନା ଜାଗୁଛି ଆଜି
ଧ୍ରୁବ ଆଉ ସତ୍ୟର କାମନା ।
ସେ କାମନା ଦୁଃଖର କାରଣ ନୁହେଁ,
ସେ କାମନା ହୁତାଶନ ଯଦି
ତାହା ତେବେ ଦେବାକୁ ଏ'
ଦୁଃଖକୁ ଧସାଇ ।

(ରଚନା : ୧୯୭୦)

# ସୁନାର ହରିଣ

ସୁନାର ହରିଣ
ମୋ ଆଗରେ ଧାଇଁଛି ।
ଆଉ ଅଳ୍ପ ଗତି ବଢ଼ାଇଲେ
ମୁଁ ତାକୁ ଧରିବି ଓ
ସହରର ଇତିହାସରେ
ମୁଁ ପ୍ରଥମ ହୋଇବି ।
ତେଣୁ, ମୁଁ ଦଉଡୁଛି
ଗତି ବଢ଼ାଉଛି
ତଥାପି ବି ସୁନାର ହରିଣ
ମୋ ଆଗରେ ରହିଛି !
ଆଶା ମୋର, ଆଉ ଅଳ୍ପ ଗତି ବଢ଼ାଇଲେ
ମୁଁ ତାକୁ ନିଶ୍ଚୟ ଧରିବି ।
ସହରର ଇତିହାସରେ
ମୁଁ ପ୍ରଥମ ହୋଇବି ।

ଶୈଶବରେ ଦିନେ,
ମନେ ପଡ଼େ,
କହିଥିଲି ମୋ ବାପାଙ୍କୁ
ଆଣି ଦେବା ପାଇଁ ସୁନାର ହରିଣ ଟିଏ ।
ବାପା ତାଙ୍କ ଚଷମାକୁ
ଟେକି ଧଳା କେଶ ମୁଣ୍ଡ ଉପରକୁ

କହିଥିଲେ - ବାବା ମୁଁ ତ ଧାଇଁଛି
ତାକୁ ଧରିନେବା ପାଇଁ
ଧରିଲେ, ତୋତେ ନିଶ୍ଚେ ଦେଇଦେବି ।
ବାପା ମୋର କେବେ ଠୁଁ ଗଲେଣି ଚାଲି
ମୋତେ ଛାଡ଼ି ସୁନାର ହରିଣ ପଛେ
ଅଫେରା ଧାଇଁବା ପାଇଁ ।

ଅଥଚ, ପ୍ରତିଶ୍ରୁତି ଦେଇଛି ମୋ ପୁଅକୁ
ସୁନାର ହରିଣ ତାକୁ ଆଣିଦେବା ପାଇଁ ।

(ରଚନା : ୧୯୯୮)

# ଜୀବନ

କେ କୁଆଡ଼େ ଚାଲିଯିବେ
ତୁମେ, ମୁଁ ଓ ଆମ ପରି ଏଠାରେ ସମସ୍ତେ ।
ଖାଲି ହେବ ଏହି ଘର
ନାଚ ଓ ସୁରାର ପିଆଲା
କବିତା ଶୁଣୁଥିବା ସୁନ୍ଦର ସୁନ୍ଦରୀ ଶ୍ରୋତା ।
ତା ପରେ କବାଟ ପଡ଼ିବ,
ତାଲା ବନ୍ଦ ହେବ,
ଏହି ଘର ବାହାରେ ବସି
ବାହାଦୁର ଢୋଳାଇ ପଡ଼ିବ ।
ତୁମେ ନୁହେଁ, ମୁଁ ନୁହେଁ, କେହି ନୁହେଁ ଏଠି
ଶାଶ୍ୱତ ବା ଚିରନ୍ତନ ।
ତୁମେ, ତୁମର ନାଁ ଚିର ଚଳେ ଯେଉଁ ମାଂସର
ନିଟୋଳ ଶରୀର
ତାହା ବି ତୁମର ନୁହେଁ ।
ତୁମେ ତୁମ ସ୍ମୃତିର ଜଗୁଆଳୀ ମାତ୍ର -
ଏକାନ୍ତ ନିଜର କରି ଶରଧାରେ
ଆଉଁସି ପକାଅ
ଦୂରରୁ ଦେଖାଇ ।
ଏଠି ଆମେ ଆସିଛନ୍ତି
ଚାଲିଯିବା ପାଇଁ
ଶୂନ୍ୟକୁ ପୂରଣ କରି ପୁଣି ଶୂନ୍ୟ କରିବାକୁ

ଶିଢ଼ି ଖୋଜି ଖୋଜି ଆମ ସମୟ ସରିବ
ଛିଡ଼ା ହୋଇ ଟାୱାର ଉପରେ ଆମେ
ମାପୁଛୁ ସ୍ୱର୍ଗକୁ ।
କିଏ ବା କାହାର ଏଠି -
ଏପରିକି ଅପେକ୍ଷାମାଣ
ତୁମ ପ୍ରେମିକା ବି ନୁହେଁ ।
ସମସ୍ତଙ୍କୁ ବାଧୁଛି ଏଠି
ନିଃସଙ୍ଗ ଜୀବନ ।
ତୁମକୁ ଦେଖିଲେ ମୁଁ ଖୁସି ହୁଏ ନାହିଁ
ଖୁସି ହୁଏ ଦେଖି ମୋର ନିଃସଙ୍ଗତା ମରୁଛି କିପରି ।
ସଙ୍ଗରୁ ନିଃସଙ୍ଗ ଆଉ ନିଃସଙ୍ଗରୁ ସଙ୍ଗ,
ଜନ୍ମରୁ ମୃତ୍ୟୁ ଓ ମୃତ୍ୟୁରୁ ଜନ୍ମ,
ସୃଷ୍ଟିରୁ ବିସ୍ଫୋରଣ ଓ ବିସ୍ଫୋରଣରୁ ସୃଷ୍ଟି,
ଆକାଶରୁ ପୃଥିବୀ ଓ ପୃଥିବୀରୁ ଆକାଶ,
ଏହିଭଳି ଉପରୁ ତଳକୁ ଓ ତଳୁ ଉପରକୁ
ଜୀବନ ମୋର କେଉଁ ତେଜାଙ୍କ ସ୍ତମ୍ଭରେ
ଉଠୁଛି ପଡୁଛି ଓ ପଡୁଛି ଉଠୁଛି ।

(ରଚନା : ୧୯୮୪)

# ପରିଚୟ

ସହରର ଅନେକ ଗଳିରେ
ରାସ୍ତାଘାଟ ବିଚ୍ ବଜାରରେ
ତୁମେ ମୋତେ ସବୁଠାରେ ଦେଖ ।
ଆଉ ଦେଖ, ମନ୍ଦିର ଭିତରେ
ପୁଣି କେବେ ସୁରା ସାକୀଙ୍କ ମେଳରେ
ରେସ୍ତୋରାଁ କି ଲାଉଁଜ୍ ଭିତରେ ।

ତୁମେ ପୁଣି ଦେଖ ମତେ
ଆକାଶର ଭସା ଭସା ବାଦଲର ତଳେ —
ସମୟର ସମୁଦ୍ର ଭିତରେ
କର୍ତ୍ତବ୍ୟର କାଠ ଭେଳା ଉପରେ ବସି ମୁଁ
ଭାସୁଥାଏ ଅନେକ ଦୂରକୁ
ଶୂନ୍ୟତା ଭିତରେ ।

ତୁମେ ଦେଖୁଥାଅ ମତେ
ଦିଗ୍‌ବଳୟ ଛଳନା ଭିତରେ,
ଯେଉଁଠାରେ
ଧୂସର ମାଟିଟା ଯାଇ ଚୁମି ଥାଏ ଆକାଶର ସୀମା,
ଯେଉଁଠାରୁ ବାହାରି ଆସନ୍ତି ପୁଣି
ଅଗଣିତ ଉଜ୍ଜ୍ୱଳ ତାରକା,
ତା ଭିତରେ ତୁମେ ମତେ ଦେଖ ।

ପୁଣି ଦେଖ,

ସୁରୁଜର ଉତାପ ଭିତରେ,

ମାଟିଆ ବୁରୁଢଟିର ଉଙ୍କୁରତା ଠାରେ

କେତେବେଳେ ଦେଖ ପୁଣି

ସମୁଦ୍ରର ଗଭୀରତା ଠାରେ,

ଚନ୍ଦ୍ରମାର ସ୍ନିଗ୍ଧତା ଭିତରେ

ଅବା ଚକୋର ଚକୋରୀର ବିଚ୍ଛେଦ ମଧରେ ।

(ରଚନା : ୧୯୭୦)

# ଏକାକୀତ୍ୱର ପ୍ରତିଧ୍ୱନି

ବସିଥା ଚୁପ୍‌ଚାପ୍,
ଅନେଇଥା ଆକାଶକୁ
ତାରାକୁ କେବଳ ।
ଜହ୍ନ ପାଖରେ ଥିଲେ ବି
ସମ୍ଭାବନା ନାହିଁ
ସେ କେବେ ହୋଇପାରେ ତୋର ।
ଦର୍ପଣରେ ଯେତେ ଟାଣି ଆଣି
ଛାତିରେ ଆଉଜାଇଲେ ବି
ଦର୍ପଣରେ ରହିବ ସେ
ହେବ ନାହିଁ ତୋର ।
ତୁ ସେହି ଭଳି ତାରାକୁ ଚାହିଁ ଥା ।
ତୋର ମନ ତଳେ
ଯେତେ ଇଚ୍ଛା, ସ୍ୱପ୍ନ ଓ ଆକାଂକ୍ଷା,
ତୋର ସେହି ସବୁଦିନେ ମଳି ଧରୁଥିବା
ଦେହର ସିନ୍ଦୁକ ଭିତରେ,
କାହିଁ କେଉଁ ଅନନ୍ତ କାଳରୁ
ସିନ୍ଦୁର ବୋଳା କୋଥଳି ପାଖରେ
ମୂଷା ଭଳି ମୁଣ୍ଡ କାଢ଼ି ସନ୍ତର୍ପଣେ
ବାହାରି ଯିବାକୁ
ଅହରହ ଚେଷ୍ଟା କରୁଛି
ତାକୁ ଥାପୁଡେଇ ଦେ -

କହ ଆଉ କିଛିଦିନ ରହିଯାଉ ।
ଯେଉଁ ଦିନ ତାରା ସଙ୍ଗେ
ତୋର ଯୋଗାଯୋଗ ହେବ
ସେ ଦିନ ବାହାରିଗଲେ
ଭୟ ନାହିଁ
ସେ ତାରାଟି ପାଖରେ
ଯେହେତୁ, ସମୟଟା ସ୍ଥିର ।

(ରଚନା : ୧୯୮୪)

•

# ନିଃସଙ୍ଗ ମଣିଷ ପାଇଁ
# ନାନାବାୟା ଗୀତ

ସହରରେ ଲୋକ ବଢ଼ିଲେ
ତୋର କ'ଣ ଯାଏ ରେ ବାୟା ?
ତୋ ପାଇଁ ଶ୍ମଶାନ ଯାହା
ସହର ବି ତାହା ।
ତୋ ପାଇଁ ବତୀ ଖମ୍ବ
ଉଲଗ୍ନ ନାରୀର ଦେହ ।
ଜଳରେ ବୁଡ଼ିଲେ ତୋର
କାମନାର କ୍ଷୟ ।
ତୋ ପାଇଁ ବୟସ ନାହିଁ
ନାହିଁ ତୋର ବୁଢ଼ିବାକୁ ଭୟ ।
ଏଠି ଯାତ୍ରା ...
ଏଠି ପୋଡା ଆଉ ପୋତା,
ଏଠି ଜନ୍ମ ଆଉ ଦୁର୍ଘଟଣା,
ପ୍ରେମ ଓ ଯନ୍ତ୍ରଣା,
ସବୁର ଊର୍ଦ୍ଧ୍ୱରେ ବାୟା
ରହିଥିବୁ ଯାହା,
ତୋ ପାଇଁ ସହରଟା ଯାହା
ଶ୍ମଶାନ ବି ତାହା ।

(ରଚନା : ୧୯୮୪)

# କାହା ପାଇଁ

ଅଶ୍ରୁ ଝରେ କାହା ପାଇଁ
କାହାପାଇଁ ବ୍ୟଥିତ ଏ ପ୍ରାଣ ?
କାହା ପାଇଁ ଏତେ ସ୍ନେହ, ଏତେ ଯେ ମମତା;
କାହା ପାଇଁ ଏତେ ଅଭିମାନ ?
କାହା ପାଇଁ ମୁଁ ଭାବପ୍ରବଣ ?
କାହା ପାଇଁ ଏତେ ହୁତାଶନ ?
କାହା ପାଇଁ ଏତେ ଚିନ୍ତା, ଏତେ ଆଲୋଡ଼ନ ?
କାହା ପାଇଁ ଏତେ ଭକ୍ତି କରିବାକୁ କା'ର ଆବାହନ ?
କାହା ପାଇଁ ଏତେ ସୃଷ୍ଟି, ଏତେ ଯେ ପୀଡ଼ନ ?
କେତେ ଧାରା କେତେ ବା ଯେ ମନ ?

(ରଚନା : ୧୯୭୦)

# ମଦ୍ୟପ ପିତା ଉଦ୍ଦେଶ୍ୟରେ

ଚାହା ଖାଇଲା ବେଳେ
ତା ମୁଣ୍ଡକୁ ସାଉଁଳେଇ
କେତେ ଗେହ୍ଲା କରେ ସେ
ସନ୍ଧ୍ୟା ହେଲେ, ସେ ଏମିତି ପାଗଳ କାହିଁକି ହୁଏ ?
ସକାଳର ସତେଜ ମୁହଁଟା
ଫେଣେଇ ଯାଏ, ଗନ୍ଧ ଆଉ ଗାଳି ଦୋ ଅକ୍ଷରୀରେ,
ତା' ବାପା !

ତା ସାଙ୍ଗର ବାପା -
କେତେ ମପା ଚୁପା ।
ସନ୍ଧ୍ୟା ହେଲେ
ପିଲାଙ୍କୁ ବସାଇ
ପ୍ରାର୍ଥନା କରାଇବା,
ବେତ ଧରି ବସି ପାଠ ପଢ଼ାଇବା,
ନିୟମିତ ରାତି ଦଶ ସୁଦ୍ଧା
ବିଛଣାକୁ ଯିବା -
ତା ବାପାଠାରେ ସେ କେବେ ଦେଖିନି
ବିଛଣା ଭିତରେ ମୁଣ୍ଡ ଗୁଞ୍ଜି ଅନେକ କାନ୍ଦିଛି
କାହିଁକି ସେ ବାପାଠାରୁ ସନ୍ଧ୍ୟା ବେଳେ
କେବେ ବେତ ପାହାର ଖାଇନି ?

(ରଚନା : ୧୯୮୪)

# ଘର

ଫେରିବାକୁ ପଡ଼େ ବୋଲି
ଫେରିବାକୁ ହୁଏ ।
ସବୁ ଅଙ୍କ, ମସିହା ଓ ଶତାବ୍ଦୀକୁ
ଧୋଇ ନିଏ କିଏ ?
ଶୂନ୍ୟ ସମୟରେ କିଛି କ୍ଷଣ
ହତାଶ ଝୁଲାଇ ରଖେ ।
ଫେରିବାକୁ ପଡ଼େ ବୋଲି
ଫେରିବାକୁ ହୁଏ ।
ଦଶ ବର୍ଷ କମ କିଛି ନୁହେଁ
ଭୋକ ଆଉ ହେବ ନାହିଁ ବୋଲି
ଶପଥର ଶେଷ ପାହାଚରେ
ଓପାସ ଶୋଇବାକୁ ହୁଏ ।
ଫେରିବାକୁ ପଡ଼େ ବୋଲି
ଫେରିବାକୁ ହୁଏ ।
ସାକ୍ଷୀର ମାନେ କିଛି ନାହିଁ,
ପାଣିରେ ଗାର ଭଳି ସେମାନେ ଯେ
କେ କୁଆଡେ ଉଭେଇ ଯାଆନ୍ତି ।
କେବଳ ଗୋଟାଏ ପତଳା ଚାଦର ଭଳି
ସ୍ମୃତିରେ କିଛି ଅଙ୍ଗୀକୃତ କାମନାକୁ ନେଇ
ସାପର ଜିଭ ଭଳି ଲହ ଲହ ହୁଏ

ଫେରିବାକୁ ପଡ଼େ ବୋଲି
ଫେରିବାକୁ ହୁଏ ।
ଭୁଲିଯିବା ତ ସହଜ ନୁହେଁ ।
ସହରରୁ ଫେରିବା ବି ସହଜ ନୁହେଁ ।
ତଥାପି ଫେରିବାକୁ ହୁଏ ।
ଫେରିବାକୁ ପଡ଼େ ବୋଲି
ଫେରିବାକୁ ହୁଏ ।

(ରଚନା : ୧୯୮୪)

# ସତ୍ୟ

ବୋଧହୁଏ ଭାଙ୍ଗିବା ହିଁ
ଏକମାତ୍ର ସତ୍ୟ ।
ଶିବ ସତ୍ୟ
ଧ୍ୱଂସ ହିଁ ସତ୍ୟ ।
ସୃଷ୍ଟିତ ଅନିଶ୍ଚିତ
ହେବ କି ହେବ ନାହିଁ
ତାକୁ ନେଇ ଦ୍ୱନ୍ଦ
ରହିଛି ଅମୀମାଂସିତ ।
ସବୁର ବୟସ ଅଛି
ସମ୍ପର୍କର ବି ।
ବୟସ ରହିଲେ
ଯାଇ ବିଲୟ ରହିଛି ।
ନିରପେକ୍ଷ ସମୟରେ
ଅନେକ ଆପେକ୍ଷିକ ଖଣ୍ଡ -
କେତେବେଳେ କାହାର,
କାହାର କେତେବେଳେ ।
ତାହାରି ଭିତରେ
ଜୀବନ,
ଧ୍ୱଂସର ବଳୟ ଭିତରେ ।

(ରଚନା : ୧୯୯୯)

# ଓଲଟ କବିତା

ହେ ମୋର
ଆରାଧ୍ୟ ଦାରିଦ୍ର୍ୟ
ତୁମେ ଅବ୍ୟାହତ ରୁହ
ତା ନ ହେଲେ ମୁଁ ବୃତ୍ତିହୀନ ହେବି ।
ତୁମେ ବ୍ୟାପକ ହୁଅ
ମୁଁ ମୋଟା ଅନୁଦାନ ପାଇବି ।
ମୋତେ ଛାଡ଼ି ତୁମେ ସଭିଙ୍କୁ ଗ୍ରାସି ଯାଅ
ମୁଁ ଏକଛତ୍ର ସେବା କରିବି ।
ତୁମେ ଆସ ତୁମର ସମସ୍ତ ସହଚର ଧରି
କ୍ଷୁଧା, ନିଶା, ଅଶିକ୍ଷା ବା ବ୍ୟାଧି
ମୋ ବୃହତ୍ତର ଅଟ୍ଟାଳିକାର ସମସ୍ତ ଦୁଆର
ତାଙ୍କ ପାଇଁ ମୁକୁଳା ରହିଛି
ତାଙ୍କ ପାଇଁ ଭିନ୍ନ ଭିନ୍ନ ଘର ଖଞ୍ଜି ଦେବି
ପ୍ରତିଶ୍ରୁତି ଦେଉଛି ।

୨

ପରବର୍ତ୍ତୀ ଜନ୍ମ ପାଇଁ
ଅନୁରୋଧ ମୋର
ହେ ଭଗବାନ !
ମୋତେ ଦଲାଲ ଟିଏ କର ।
ବଳଦ ବିକିଲେ
ତୁମକୁ ଶତକଡ଼ା ଦୁଇଭାଗ ଦେବି ।

ମଟର ବିକିଲେ
ଶତକଡ଼ା ଚାରିଭାଗ ଦେବି ।
ଡିଗ୍ରୀ ବିକିଲେ
ଶତକଡ଼ା ଦଶ ଭାଗ ଦେବି ।
ଚାକିରି ବିକିଲେ
ଶତକଡ଼ା କୋଡ଼ିଏ ଭାଗ ଦେବି ।
ନିଷ୍ଠତ୍ତି ବିକିଲେ
ଶତକଡ଼ା ତିରିଶ ଭାଗ ଦେବି ।
ଆଉ ଏ ମାଟିକୁ ବିକିଲେ
ତୁମ ରାଣ,
ଶତକଡ଼ା ଏକାବନ ଭାଗ ଦେବି ।

୩

ଆବୁ ପରି
ଅବାଞ୍ଛିତ ମେରୁଦଣ୍ଡ ମୋର ।
ସେମାନେ କିନ୍ତୁ ଦେଇଛନ୍ତି ପ୍ରତିଶ୍ରୁତି
ଯେ ଦୁଇ ହଜାର ମସିହା ସୁଦ୍ଧା
ଏ' ମେରୁଦଣ୍ଡ ଦାୟରୁ ମୋତେ
ମୁକ୍ତ କରିଦେବେ ଓ
ଗୁରୁଣ୍ଡି ଗୁରୁଣ୍ଡି ଚାଲିବାର ଶୈଶବ ସୌଭାଗ୍ୟ
ମୋର ଫେରାଇ ଆଣିବେ ।
ସେତେବେଳେ କି ସୁନ୍ଦର
ମୁଁ ସତେ ନ ଦିଶିବି ?
ମୋ ମୁଣ୍ଡରେ ଯଦି କେହି ଚଅଁର ବାନ୍ଧିବ
ମୁଁ ତ କାହ୍ନୁ ହୋଇଯିବି !
ମୁଁ ଜାଣିଛି
ଏମାନଙ୍କ ପ୍ରତିଶ୍ରୁତି
ପାଣିର ଗାର ନୁହଁ ।

ମୁଁ ଦେଖୁଛି
ମୋର ବହୁ 'ଗୁରୁଜନ',
ସମାଜର 'ମାନ୍ୟଗଣ୍ୟ'
ଯେଉଁମାନେ ଧାଡ଼ିର ପ୍ରଥମରେ ଠିଆ ହୋଇଥିଲେ
ସେମାନେ ମେରୁଦଣ୍ଡରୁ
ମୁକ୍ତି ପାଇଛନ୍ତି ଓ
ସାଲୁବାଲୁ ଗୁରୁଣ୍ଡି ଗୁରୁଣ୍ଡି
ଖୁବ ସୁନ୍ଦର ଦିଶୁଛନ୍ତି ।

୪

ଆସ ଆମେ ଗଢ଼ିବା
ଏକ ଏପରି ସଂସାର
ଯେଉଁଠି ନ ଥିବ
ନୀତି ନୈତିକତାର ଭାର
ଶଠ ହେବା ପରାକାଷ୍ଠା ହେବ
ବିଟପୀଙ୍କ ପାଇଁ
ରାସ୍ତାସାରା ତୋରଣ ଲାଗିବ ।
କଳାବଜାରୀ ପାଇବେ ବହୁ ପୁରସ୍କାର
ମିଥ୍ୟା କହିବେ ବୋଲି
ପ୍ରତିଶ୍ରୁତି ଦେଲେ
ହୋଇବ ବିଚାର ।
ସତ କହିବା ସମ୍ପୂର୍ଣ୍ଣ ନିଷିଦ୍ଧ ହେବ
ଗାନ୍ଧୀକୁ ଓହ୍ଲାଇ ଦେଇ
ଗୋବିନ୍ଦ ବସିବ
ଯୁଧିଷ୍ଠିର ଘୃଣ୍ୟ ହେବ
ଦୁଃଶାସନ ପ୍ରଶସ୍ତି ପାଇବ ।

(ରଚନା : ୧୯୯୩)



**ବୀରେନ୍ଦ୍ର ନାୟକ**

ଜନ୍ମ : ୧୯୫୧, ସ୍ଥାନ : ଯାଜପୁର

ଶିକ୍ଷା : ମିସେସ୍ କେ.ଏମ୍.ପି.ଏମ୍. ସ୍କୁଲ, ଜାମସେଦପୁର
ରେଭେନ୍ସା କଲେଜ, କଟକ (ସ୍ନାତକ)
ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ (ସ୍ନାତକୋତ୍ତର)
ଆଇ.ଆଇ.ଟି. ଖଡ଼ଗପୁର (ପି.ଏଚ.ଡି.)

ବୃତ୍ତି : ଗଣିତ ଅଧ୍ୟାପକ, ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର

ରୁଚି : ବେଳେ ବେଳେ କବିତା ଓ ଗପ ଲେଖିବା, ସମସାମୟିକ ପରିସ୍ଥିତି ଉପରେ ପ୍ରବନ୍ଧ ଲେଖିବା, ବିକଳ୍ପ ସନ୍ଧାନୀ ମଞ୍ଚର ଆବାହକ ଭାବେ ଆଲୋଚନା ସଭା ଆୟୋଜନ କରିବା, ବାର୍ଷିକ ପ୍ରକାଶନ 'ଓଡ଼ିଆ ଓ ଓଡ଼ିଶା : ସମୀକ୍ଷା'ର ସମ୍ପାଦନା କରିବା ।